# ବୈଷ୍ଣବ କବି
# ବାବାଜୀ ପଦ୍ମଚରଣ ଦାସ

## ସଂକ୍ଷିପ୍ତ ଜୀବନୀ ଓ ସାହିତ୍ୟକୃତି

– ରଚନା –

ଶ୍ରୀ ଧରଣୀ ଚନ୍ଦ୍ର ମହାନ୍ତି

# ବୈଷ୍ଣବ କବି
# ବାବାଜୀ ପଦ୍ମଚରଣ ଦାସ

( ସଂକ୍ଷିପ୍ତ ଜୀବନୀ ଓ ସାହିତ୍ୟକୃତ )

— ରଚନା —

ଶ୍ରୀ ଧରଣୀ ଚନ୍ଦ୍ର ମହାନ୍ତି

ରଚନା :

**ଶ୍ରୀ ଧରଣୀ ଚନ୍ଦ୍ର ମହାନ୍ତ**

ପ୍ରକାଶକ

**ବାଭାଜୀ ପଦ୍ମଚରଣ**
**ସ୍ମୃତି ବିହାର**

ଗ୍ରା:—ଗୁହାଳିଆସାହି
ପୋ:—ସୋର
ଜି:—ବାଲେଶ୍ୱର

ମୁଦ୍ରଣ :

**ବିଶ୍ୱଗୁରୁ ପ୍ରେସ୍**
ସହଦେବଖୁଣ୍ଟା
ବାଲେଶ୍ୱର
ଫୋନ୍—୬୦୯୮୮

ପ୍ରଥମ ମୁଦ୍ରଣ
ବକୁଳ ଅମାବାସ୍ୟା
୨୦୦୦ ମସିହା
ଜାନୁୟାରୀ ୬ ତାରିଖ

ଜୟଗୁରୁ

ଗୁରୋଃ ପରତରଂ ନାସ୍ତି ତସ୍ମୈ ଶ୍ରୀଗୁରବେ ନମଃ ।

# ନିବେଦନ

ପରମ କଲ୍ୟାଣମୟ ଶ୍ରୀଗୁରୁଭଗବାନଙ୍କର ଅପାର କରୁଣା ବଳରେ ବୈଷ୍ଣବ କବି ବାବାଜୀ ପଦ୍ମଚରଣ ଦାସଙ୍କର ଜୀବନୀ ଓ ତାଙ୍କର ସାହିତ୍ୟ କୃତି ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ପୁସ୍ତକାକାରରେ ପ୍ରକାଶ ପାଇ ପାରିଥିବାରୁ ଏହି ଦୀନ ଅକିଞ୍ଚନ ତାଙ୍କର ଅମଳ-କମଳ ଶ୍ରୀଚରଣରେ କୋଟି କୋଟି ପ୍ରଣିପାତ ପୂର୍ବକ ହୃଦୟର ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି ।

ଆଜି ପବିତ୍ର ବକୁଳ ଅମାବାସ୍ୟା—ବାବାଜୀ ପଦ୍ମଚରଣଙ୍କର ଜନ୍ମତିଥି । ସାଧୁ ମହାପୁରୁଷମାନଙ୍କର ଶୁଭଜନ୍ମ ତିଥିକୁ ଆମ ସମସ୍ତଙ୍କର ସ୍ମରଣ କରିବା ପରମ କର୍ତ୍ତବ୍ୟ । ଜନୈକ ପ୍ରଥିତଯଶା ଦାର୍ଶନିକ ଏ ପ୍ରକାର ଶୁଭ ଜନ୍ମ ତିଥିକୁ ସ୍ମରଣ କରିବା ସନ୍ଦର୍ଭରେ ଲେଖିଛନ୍ତି—"ସ୍ମାରଂ ସ୍ମାରଂ ପ୍ରିୟ-ଶୁଭତିଥିଂ ବିଷ୍ଣପଂ ପ୍ରାପୟନ୍ତି ନ୍ । "

ବାବାଜୀ ପଦ୍ମଚରଣଙ୍କୁ ମୁଁ ପିଲାଦିନେ ଦେଖିଛି । ତାଙ୍କର ସୌମ୍ୟ ରୂପ, ହସ ହସ ବଦନ, ମୁଣ୍ଡିତ ମସ୍ତକଟି ଆଜି ମଧ୍ୟ ଆଖି ଆଗରେ ଭସିଉଠେ । ସେ ଖଡ଼ମ ପିନ୍ଧି, ଛତାଟିଏ ଧରି ପ୍ରତିଦିନ ମଧ୍ୟାହ୍ନ ୧୨ ଟା ସମୟରେ ମଠରୁ ତାଙ୍କର ଆରାଧ୍ୟ ଦେବତା ଶ୍ରୀଶ୍ରୀରାଧାଗୋବିନ୍ଦ ଜୀଉଙ୍କ ମନ୍ଦିରକୁ ଆସନ୍ତି ପ୍ରସାଦ ସେବନ ପାଇଁ । ପୁଣି ସନ୍ଧ୍ୟାରେ ଆସନ୍ତି ଆରତି ଦର୍ଶନ ପାଇଁ । ତାପରେ ଆରମ୍ଭ ହୁଏ କୀର୍ତ୍ତନ । ସେ ଦୁଇ ଗୋଡ଼ ପଛକୁ ମୋଡ଼ି ଗୋଟିଏ ପାଖରେ ବସି ଡାହାଣ ହାତର ପାପୁଲିକୁ ଶ୍ରୀପ୍ରଭୁଙ୍କୁ ଲକ୍ଷ୍ୟ କରି ବିଭିନ୍ନ ଭାବରେ ଗ୍ଭଳନା କରନ୍ତି—ସତେ ଯେପରି ତାଙ୍କର ସେବା କରୁଛନ୍ତି । କୀର୍ତ୍ତନ ଶେଷରେ ପ୍ରସାଦ ସେବନ କରି ମଠକୁ ବିଶ୍ରାମ ପାଇଁ

ଯାଆନ୍ତି । ତାଙ୍କ ମଠରେ ଅଧିକାଂଶ ସମୟରେ ସାଧୁ, ସନ୍ନ୍ୟାସୀ, ସଜ୍ଜନଗଣ ବସି ତାଙ୍କଠାରୁ ଶାସ୍ତ୍ର ଆଲୋଚନା ଓ ଉପଦେଶ ବାଣୀ ଶୁଣନ୍ତି ।

ମୋତେ ସେ ଅତ୍ୟନ୍ତ ସ୍ନେହ କରୁଥିଲେ । ମୋତେ ଦେଖିଲେ କହନ୍ତି — "ତୋ ନାଁ ଧରଣୀ; ମୁଁ ତୋ ଉପରେ ଚଢ଼ିବି; ତୁ ତ ବାସୁକୀ – ସାପଟିଏ- ତୋର ପୁଣି କାନ ଆସିଲା କେଉଁଠୁ ? ଆ, ତୋ କାନ କାଟି ଦେବି । "

ଦିନକର ଘଟଣା । ଆମେ ପିଲାମାନେ ଗାଁ ମାଇନର ( ବର୍ତ୍ତମାନର ବାଳିକା ସ୍କୁଲ) ବାଡ଼ିରୁ ଟଗରଫୁଲ ତୋଳୁଥାଉଁ । ମୁଁ ଗଛରେ ଚଢ଼ିଥାଏଁ । ଏହି ସମୟରେ ବାବାଜୀ ପଦ୍ମଚରଣ ସଡ଼କରେ ଯାଉଥିଲେ । ଆମ ଆଡ଼କୁ ଅନାଇଁ ଗଛରେ ଚଢ଼ି କିଏ ଫୁଲ ତୋଳୁଛି ବୋଲି ପଚାରିବାରୁ ମୁଁ ମୋ ନାଁଟି କହିଲି । ତାଙ୍କର ଦ୍ୱିତୀୟ ପ୍ରଶ୍ନର ଉତ୍ତରରେ କହିଲି "ଝୁଲଣଯାତ୍ରାରେ ଗୋବିନ୍ଦଙ୍କୁ ହାର ଗୁନ୍ଥି ଦେବା ପାଇଁ ଫୁଲ ତୋଳୁଛୁ । " ସେ କହିଲେ- "ଗଛରୁ ଫୁଲ ତୋଳି ତାକୁ କାହିଁକି କଷ୍ଟ ଦେଉଛୁ ? ଠାକୁରଙ୍କୁ କହୁ ନାହୁଁ —ଆପଣ ଆସି ଫୁଲ ଗଛଉପରେ ବସନ୍ତୁ – ମୁଁ ଟିକିଏ ଆପଣଙ୍କ ଶୋଭା ଦେଖିବି । " ଏହା କହି ସେ ଚାଲିଗଲେ । କଥା କେତେ ପଦ ମନରେ ଥାଏ । ପରିଣତ ବୟସରେ ଏହି କଥାର ମର୍ମ ବୁଝିପାରିଲି । ସୃଷ୍ଟି ମଧ୍ୟରେ ସ୍ରଷ୍ଟାଙ୍କୁ ଦେଖି ପାରିବା ଆଧ୍ୟାତ୍ମିକ ସାଧନାର ଚରମ ସ୍ତର । ବୈଷ୍ଣବ ଦର୍ଶନରେ ଏହାକୁ କୁହାଯାଇଛି - " ଯାହାଁ ଯାହାଁ ନେତ୍ର ପଡ଼େ, ତାହାଁ ତାହାଁ କୃଷ୍ଣ ସ୍ଫୁରେ । " ମୋତେ କହିଥିବା କେତେ ପଦ କଥାରୁ ମୁଁ ଅନୁଭବ କରିପାରିଲି — ବାବାଜୀ ପଦ୍ମଚରଣ କେତେ ମହାନ୍ ଥିଲେ । ତାଙ୍କ ରଚିତ ପୁସ୍ତକମାନ ପାଠ କରିବାକୁ ପ୍ରେରଣା ପାଇଲି । ଉପାଦେୟ ଓ ବିରଳ ପୁସ୍ତକମାନ ପ୍ରକାଶ କରି ବାବାଜୀ ପଦ୍ମଚରଣ ଉତ୍କଳ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଯାଇଛନ୍ତି । ସେ ସମସ୍ତ ପାଠ କରି ଅଭିଭୂତ ହୋଇ ପଡ଼ିଲି । ପର ମୁହୂର୍ତ୍ତରେ ମନରେ ଦୁଃଖ ଆସିଲା ଯେ ତାଙ୍କର ସାହିତ୍ୟକୃତି ବର୍ତ୍ତମାନ ଉପେକ୍ଷିତ ଏବଂ ସାହିତ୍ୟକାରମାନଙ୍କ ତାଲିକାରେ ତାଙ୍କର ନାମ ନାହିଁ କହିଲେ ଚଳେ । ତାଙ୍କର ତିରୋଧାନ ମହୋତ୍ସବରେ ଓଡ଼ିଶା ବିଧାନ ସଭାର ପୂର୍ବତନ ବାଚସ୍ପତି ଶ୍ରୀଯୁକ୍ତ- ନନ୍ଦକିଶୋର ଦାସ ତାଙ୍କର ସଂକ୍ଷିପ୍ତ ଜୀବନୀ ଖଣ୍ଡିଏ ପୁସ୍ତକ ଆକାରରେ

ପ୍ରକାଶ କରିଥିଲେ । ବାବାଜୀଙ୍କର ସମସାମୟିକ ତାଙ୍କର ପ୍ରତିବେଶୀଙ୍କ ଠାରୁ ତାଙ୍କର ଜୀବନୀ ସମ୍ବନ୍ଧରେ ଅଧିକ ବିବରଣୀ ସଂଗ୍ରହ କରି ପୂର୍ବୋକ୍ତ ଜୀବନୀଟିକୁ ସାମାନ୍ୟ ପରିବର୍ତ୍ତିତ କରିଦେଲି । ଏତଦ୍‌ବ୍ୟତୀତ ତାଙ୍କର ପ୍ରତ୍ୟେକ ପୁସ୍ତକ ସମ୍ବନ୍ଧରେ ସାମାନ୍ୟ ସୂଚନା ଦେଇ ସ୍ଥାନୀୟ ଦୈନିକ ସମ୍ବାଦପତ୍ର "ଜନ୍ମଭୂମି" ରେ ଧାରାବାହିକ ଭାବରେ ଚଉଦ ଗୋଟି ପ୍ରବନ୍ଧ ୧୯୮୬ ମସିହାରେ ପ୍ରକାଶ କଲି — " କବି ବାବାଜୀ ପଦ୍ମଚରଣ " ଶିରୋନାମାରେ ।

ଏହି ପ୍ରବନ୍ଧମାନ ପ୍ରକାଶ ପାଇବା ପରେ କଟକ ସହର ଓଡ଼ିଆ ବଜାର ବାଙ୍କେଶଗଳିସ୍ଥ ଶ୍ରୀହରି ସଂକୀର୍ତ୍ତନ ପ୍ରକାଶନୀର ପ୍ରତିଷ୍ଠାତା ବାବାଜୀ ଶ୍ରୀଯୁକ୍ତ ଫକିର ମୋହନ ଦାସ ମୋ ସହିତ ପତ୍ରାଳାପ କଲେ ଏବଂ ଏକାଧିକବାର ମୋ ନିକଟରୁ ବାବାଜୀ ପଦ୍ମଚରଣଙ୍କର କେତେ ଖଣ୍ଡ ପୁସ୍ତକ ନେଇ ପାଠ କଲେ । ସେତେବେଳକୁ ସେ ବାବାଜୀଙ୍କର ଅନ୍ୟ କେତେ ଖଣ୍ଡ ପୁସ୍ତକ ସଂଗ୍ରହ କରିସାରିଥାନ୍ତି । ବାବାଜୀ ଫକିର ମୋହନ ଉତ୍କଳ ବିଶ୍ୱବିଦ୍ୟା-ଳୟର ଓଡିଆ ବିଭାଗରେ ଜଣେ ପଦସ୍ଥ ଗବେଷଣା - ଦିଗ୍‌ଦର୍ଶକ ଭାବରେ କାର୍ଯ୍ୟ କରୁଥାନ୍ତି । ତାଙ୍କ ଅଧୀନରେ ବିଶ୍ୱବିଦ୍ୟାଳୟର ଜଣେ ଛାତ୍ରୀ ବାବାଜୀ ପଦ୍ମଚରଣଙ୍କ ସାହିତ୍ୟକୃତିମାନ ଗବେଷଣା କରୁଥିବାର ଶୁଣି ଖୁସି ମୋର କୁଣ୍ଢେମୋଟ ହୋଇଗଲା । ସେତେବେଳକୁ ବାବାଜୀ ଫକିର-ମୋହନ ଙ୍କ ଦ୍ୱାରା ଉପରୋକ୍ତ ପ୍ରକାଶନୀ ପକ୍ଷରୁ ବାବାଜୀ ପଦ୍ମଚରଣଙ୍କ କୃତ ଶ୍ରୀଚୈତନ୍ୟ ଚନ୍ଦ୍ରାମୃତ ସଂସ୍କୃତ ପୁସ୍ତକର ଓଡ଼ିଆ ପଦ୍ୟାନୁବାଦ ସମ୍ବଳିତ ପୁସ୍ତକଟିର ପୁନର୍ମୁଦ୍ରଣ କରାସରିଥାଏ ।

ବାବାଜୀ ଫକିରମୋହନଙ୍କ ସହିତ ଯୋଗାଯୋଗ ପରେ ମନରେ ପ୍ରେରଣା ପାଇଲି — ଜିଲ୍ଲା ସ୍ତରରେ ଏବଂ ପ୍ରାଦେଶିକ ସ୍ତରରେ ବାବାଜୀ ପଦ୍ମଚରଣ ପରିଚିତି ସାମାରୋହ ଆୟୋଜନ କରି ତାଙ୍କର ସାହିତ୍ୟ କୃତିକୁ ସାହିତ୍ୟ ପ୍ରେମୀମାନଙ୍କଠାରେ ପରିଚିତ କରାଇବା ପାଇଁ । ଅବସରପ୍ରାପ୍ତ ପୋଲିସ ବିଭାଗର ଡ଼ି:ଆଇ:ଜି: ଶ୍ରୀଯୁକ୍ତ ବସନ୍ତ କୁମାର ମହାନ୍ତି ଏହି ମହାନ କାର୍ଯ୍ୟଟିକୁ ସମ୍ପନ୍ନ କରିବା ପାଇଁ ଆଗେଇ ଆସିଲେ ଏବଂ ସେ ଦିଗରେ ପ୍ରାଥମିକ କାର୍ଯ୍ୟମାନ ଆରମ୍ଭ କରିଦେଲେ । କିଛି କାଳର

ଅଲଂଘନୀୟ ବିଧାନ କ୍ରମେ ଅଳ୍ପ ଦିନ ପରେ ସେ ଇହଧାମ ତ୍ୟାଗ କଲେ । ଏପରି ସମାରୋହମାନ କରିବା ଆଶା ମନରୁ ଲିଭିଗଲା ।

ବାର୍ଦ୍ଧକ୍ୟ ଏବଂ ବ୍ୟାଧି - ପ୍ରପୀଡିତ ଅବସ୍ଥାରେ ମୁଁ ଆଉ କିଛି କରି ନ ପାରି, ଆମ ରାଜ୍ୟର ସରକାରୀ ଓ ବେସରକାରୀ ସାହିତ୍ୟ ପ୍ରତିଷ୍ଠାନମାନ, ବିଭିନ୍ନ ମଠାଶ୍ରମ, ସଂବାଦ ପତ୍ର/ପତ୍ରିକାମାନ, ସାହିତ୍ୟିକ ଓ ସଜ୍ଜନମାନଙ୍କୁ ବାବାଜୀ ପଦ୍ମଚରଣ ସାହିତ୍ୟ – କୃତି ସମ୍ବନ୍ଧରେ ଯତ୍‌କିଞ୍ଚିତ୍ ଅବହିତ କରିବା ଉଦ୍ଦେଶ୍ୟରେ ଏହି "ବୈଷ୍ଣବ କବି ବାବାଜୀ ପଦ୍ମଚରଣ ଦାସ, ସଂକ୍ଷିପ୍ତ ଜୀବନୀ ଓ ସାହିତ୍ୟ - କୃତି" ଶୀର୍ଷକ ପୁସ୍ତକଟି ପ୍ରକାଶ କରି ଏ ଦିଗରେ ମୋର କର୍ତ୍ତବ୍ୟ ଶେଷ କରୁଅଛି ।

ଏହା ଦ୍ୱାରା ଯଦି ଉତ୍କଳ ସାରସ୍ୱତ ଭଣ୍ଡାରରେ ବାବାଜୀ ପଦ୍ମଚରଣ ଦାସଙ୍କ ସାହିତ୍ୟକୃତି ସମୁଚିତ ସ୍ଥାନ ଓ ସମ୍ମାନ ଲାଭ କରି ପାରିବ, ତାହେଲେ ଶ୍ରମ ସାର୍ଥକ ମନେ କରିବି ।

॥ ଇତି ॥

ବହୁଳ ଅମାବସ୍ୟା
ତା ୬ । ୧ । ୨୦୦୦

**ଶ୍ରୀ ଧରଣୀ ଚନ୍ଦ୍ର ମହାନ୍ତ**

"ଭ୍ରାତୃସ୍ମୃତି"
ସହଦେବଖୁଣ୍ଟା
ବାଲେଶ୍ୱର —୭୫୬୦୦୧



—: ଜୟଗୁରୁ :—

# ଓବିଷ୍ଣୁବ କଣ୍ଢ ବାବାଜୀ ପଦ୍ମଚରଣ

## ସଂକ୍ଷିପ୍ତ ଜୀବନୀ

ଅବିଭକ୍ତ ବାଲେଶ୍ୱର ଜିଲ୍ଲା ଆୟତନରେ ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲାମାନଙ୍କ ଠାରୁ ଛୋଟ ହେଲେ ହେଁ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ଦିଗରେ ଏହି ଜିଲ୍ଲାର ଅବଦାନ କମ୍ ନୁହେଁ । *ଭକ୍ତକବି ଗୋବିନ୍ଦକୃଷ୍ଣ, କବିବର ରାଧାନାଥ, ବ୍ୟାସକବି ଫକିରମୋହନ, କାନ୍ତକବି ଲକ୍ଷ୍ମୀକାନ୍ତ, ଚିନ୍ତାମଣି ପ୍ରମୁଖ ଏହି ଜିଲ୍ଲାରେ ଜନ୍ମଗ୍ରହଣ କରି ଯେଉଁ ସାହିତ୍ୟ ରଚନା କରି ରଖିଯାଇଛନ୍ତି ତାହା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଚିରଦିନ ଅମୂଲ୍ୟ ସମ୍ପଦ ହୋଇ ରହିଥିବ । ଏ ଜିଲ୍ଲାର ସ୍ୱାମୀପାଦ ଶ୍ରୀମଦ୍ ଶ୍ରୀଧର ସ୍ୱାମୀ ଶ୍ରୀମଦ୍‌ଭାଗବତ ଆଦି ଗ୍ରନ୍ଥର ସଂସ୍କୃତ ଭାଷାରେ ଭାଷ୍ୟ ରଚନା କରି ସର୍ବଭାରତୀୟ କ୍ଷେତ୍ରରେ କିପରି ସୁନାମ ଅର୍ଜନ କରିଛନ୍ତି, ତାହା ପ୍ରତ୍ୟେକ ଆଧ୍ୟାତ୍ମପ୍ରେମୀଙ୍କୁ ଜଣା । ଏମାନଙ୍କ ଛଡ଼ା ଏ ଜିଲ୍ଲାର ଶହ ଶହ ସାହିତ୍ୟ ରସିକ ନିଜ ନିଜର ଭାବ ଅନୁସାରେ ଅଗଣିତ ସଙ୍ଗୀତ, କାବ୍ୟ, ଉପନ୍ୟାସ, ନାଟକ, ପ୍ରବନ୍ଧ, ଅନୁବାଦ ସାହିତ୍ୟ ରଚନା କରିଛନ୍ତି ଓ କରୁଛନ୍ତି । ସେମାନଙ୍କ ମଧ୍ୟରୁ କାହାରି କାହାରି ରଚନା ପ୍ରକାଶ ପାଇବା ଦ୍ୱାରା ଓଡ଼ିଆ ଜାତି ସେ ସବୁ ପାଠ କରିବାର ସୁବିଧା ପାଉଛି । ନାନା କାରଣରୁ ଯେଉଁ ସବୁ ରଚନା ପ୍ରକାଶ ପାଇ ପାରୁ ନାହିଁ , ସେ ସମସ୍ତ ଘରେ ବିଡ଼ା ବନ୍ଧା ହୋଇ ରହୁଛି ଏବଂ କାଳକ୍ରମେ ନଷ୍ଟ ହୋଇଯାଉଛି । ସେ ସବୁର ହିସାବ ରଖୁଛି କିଏ ? ଯେଉଁ କେତେଜଣଙ୍କର ସାହିତ୍ୟ ରଚନା ସେମାନଙ୍କର ବ୍ୟକ୍ତିଗତ ପ୍ରଚେଷ୍ଟାରେ ନିଜ ନିଜର ଜୀବନ କାଳ ମଧ୍ୟରେ ଲୋକଲୋଚନ-ଗୋଚର ହୋଇପାରିଥିଲା, ସେ ସମସ୍ତ ସେମାନଙ୍କ ମୃତ୍ୟୁ ପରେ ମଉଳି ପଡ଼ିଲାଣି । ଏହି ଶ୍ରେଣୀର ସାହିତ୍ୟ-ସ୍ରଷ୍ଟାଙ୍କ ମଧ୍ୟରେ କବି ବାବାଜୀ ପଦ୍ମଚରଣ ଅନ୍ୟତମ ।

* ପଣ୍ଡିତ ବଳଦେବ ବିଦ୍ୟାଭୂଷଣ ।

ବାଲେଶ୍ୱର ଜିଲ୍ଲା, ସୋର ସହର ଅଞ୍ଚଳରେ ସନ୍ଥସରପୁର ( ଡ଼ାକନାମ ଗୁହାରିଆସାହି ) ଗୋଟିଏ ଛୋଟ ବସତି । ଗାଁଟିରେ ଚାଳିଶ ପଚାଶଟି ପରିବାର ବାସ କରନ୍ତି — ସମସ୍ତେ ଜାତିରେ କରଣ । ଦୁଇଚାରି ଘର ବ୍ରାହ୍ମଣ ମଧ୍ୟ ଅଛନ୍ତି । ଏହି ଛୋଟ ଗାଁଟି ଦେଶ ସ୍ୱାଧୀନ ହେବା ପୂର୍ବରୁ ସୋର ଥାନାର ବିଦ୍ୟାନଗରୀ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସୋର ଥାନାର ପ୍ରଥମ ଭର୍ଣ୍ଣାକୁଲର ମାଧ୍ୟମିକ ବିଦ୍ୟାଳୟଟି ଏହି ଗାଁରେ କବିବର ରାଧାନାଥ ରାୟଙ୍କ ପିତା ଶ୍ରୀଯୁକ୍ତ ସୁନ୍ଦର ମୋହନ ରାୟଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା ଏବଂ କାଳକ୍ରମେ ଏହା ମଧ୍ୟ — ଇଂରାଜୀ ବିଦ୍ୟାଳୟକୁ ଉନ୍ନୀତ ହୋଇଥିଲା । ଏହି ଗାଁଟିରେ ସେତେବେଳର ସୋର ଥାନାର ପ୍ରଥମ ବାଳିକା ମଧ୍ୟ—ଇଂରାଜୀ ବିଦ୍ୟାଳୟ ପ୍ରଥମ ସ୍ଥାପିତ ହୋଇଥିଲା ଏବଂ ବର୍ତ୍ତମାନ ଏହା ଉଚ୍ଚ — ଇଂରାଜୀ ବିଦ୍ୟାଳୟକୁ ଉନ୍ନୀତ ହୋଇଛି । ଗାଁର ଉପକଣ୍ଠରେ ସୋର ଥାନାର ପ୍ରଥମ ଉଚ୍ଚ ଇଂରାଜୀ ବିଦ୍ୟାଳୟ — ସୋର ସତ୍ୟାନନ୍ଦ ହାଇସ୍କୁଲ ପ୍ରତିଷ୍ଠିତ । ଗାଁଟି ଅତି ଛୋଟ ହୋଇଥିଲେ ମଧ୍ୟ ଏଠାରେ ତିନିଗୋଟି ଶିବମନ୍ଦିର ଏବଂ ତିନିଗୋଟି ରାଧାକୃଷ୍ଣ ମନ୍ଦିର ବିଦ୍ୟମାନ । ଗାଁଟିରେ ଦୁର୍ଗାପୂଜା, ଶିବରାତ୍ରି, ଦୋଳଯାତ୍ରା, ଝୁଲଣଯାତ୍ରା, ରାସୋତ୍ସବ ଏବଂ ବାର ମାସରେ ତେର ପର୍ବ ମହାସମାରୋହରେ ପାଳିତ ହୋଇଥାଏ । ଏହି ସମସ୍ତ କାରଣରୁ ଗାଁଟିର ଶିକ୍ଷାଗତ, ସାଂସ୍କୃତିକ ଏବଂ ଧାର୍ମିକ ଚେତନା ଉଚ୍ଚସ୍ତରର ଅଟେ । ଅତୀତରେ ଏହି ଗାଁଟିରେ ସାଧୁସନ୍ଥମାନେ ବାସ କରୁଥିବାରୁ ଏହାର ନାମ ସନ୍ଥସରପୁର ରଖାଯାଇଛି ବୋଲି ଅନୁମିତ ହେଉଅଛି । ଗୁହାରିଆ ଶବ୍ଦର ଅର୍ଥ ଦେବତାଙ୍କ ପାଖରେ ଅଧିଆ ପଡ଼ିବା ଲୋକ । ଏହି କାରଣରୁ ମଧ୍ୟ ଗାଁଟିର ଡାକନାମ ଗୁହାରିଆସାହି ହୋଇ ରହିଛି । ଯେତେଦୂର ମନେ ହୁଏ ସୋରରେ ଶୂରସେନ ରାଜାଙ୍କ ରାଜତ୍ୱ କାଳରେ ନିକଟବର୍ତ୍ତୀ ବିଭିନ୍ନ ଗ୍ରାମର ନାମ ଗୁଣାନୁସାରେ ପ୍ରଦତ୍ତ ହୋଇଥିଲା , ଯଥା—ସନ୍ଥସରପୁର, ( ଗୁହାରିଆସାହି ) ମୋବାରକପୁର, ଗୋପୀନାଥପୁର, ରାଉତରାୟପୁର, ପାଇକ ସାହି, ଲିଙ୍ଗପଡ଼ା ଘୋଡ଼ାସାହି, କମାଣପୁର, ରାୟପୁର, ଛତ୍ରପୁର, କ୍ଷୀରକୋଣୀ, ଫୁଲୁସ୍ୱିପାଟଣା, ବାର୍‌ହାପୁର, ଇତ୍ୟାଦି ।

ଏହି ସନ୍ତସରପୁର ( ଗୁହାରିଆସାହି ) ଗାଁରେ ଖ୍ରୀ ୧୮୬୮ଖ୍ରୀବ ( ସନ ୧୨୭୫ସାଲ ) ପୌଷ ମାସ ବଉଳ ଅମାବସ୍ୟା ଦିନ ବାବାଜୀ ପଦ୍ମଚରଣ ଜନ୍ମଗ୍ରହଣ କରିଥିଲେ । ପୂର୍ବାଶ୍ରମରେ ତାଙ୍କ ନାମ ଥିଲା ପାର୍ବତୀଚରଣ । ତାଙ୍କ ପିତାଙ୍କର ନାମ ସନ୍ତଚରଣ ଦାସ । ପାର୍ବତୀଚରଣଙ୍କର ବୟସ ୨/୩ ବର୍ଷ ସମୟରେ ତାଙ୍କ ମାଆ ଇହଧାମ ତ୍ୟାଗ କରିଥିଲେ ଏବଂ ରୋଗଶଯ୍ୟାରେ ପଡ଼ିଥିବା ବେଳେ ତାଙ୍କୁ ନିଜ ଖୁଡ଼ିଶାଶୁ ବିଶାଖା ଦେଇଙ୍କୁ ସମର୍ପଣ କରି ଦେଇଯାଇଥିଲେ । ସେହି କାରଣରୁ ବିଶାଖା ଦେଇ ପାର୍ବତୀଚରଣଙ୍କୁ ନିଜ ପୁଅ ପରି ଯତ୍ନରେ ଲାଳନପାଳନ ଏବଂ ତାଙ୍କ ସ୍ୱାମୀ କୃଷ୍ଣଚରଣ ଦାସ ପାର୍ବତୀଚରଣଙ୍କର ଶିକ୍ଷାର ସମସ୍ତ ଦାୟିତ୍ୱ ବହନ କରିଥିଲେ ।

ପାର୍ବତୀଚରଣ ଗ୍ରାମର ସରକାରୀ ମିଡ଼୍ଲ ଭର୍ଣ୍ଣାକୁଲାର ବିଦ୍ୟାଳୟର ପାଠ ଶେଷ କରି ବାଲେଶ୍ୱର ଜିଲାସ୍କୁଲରୁ ଏଣ୍ଟ୍ରାନ୍‌ସ ( ପ୍ରବେଶିକା ) ପରୀକ୍ଷାରେ କୃତିତ୍ୱ ସହକାରେ ଉତୀର୍ଣ୍ଣ ହୋଇଥିଲେ । ତାପରେ କଟକ ରେଭେନ୍‌ସା କଲେଜରୁ ଏଫ: ଏ: ଓ ବି: ଏ: ପାଶ୍ କରିଥିଲେ । ପିଲାଟିଦିନରୁ ପାର୍ବତୀଚରଣ ଅତିଶୟ ଧର୍ମପରାୟଣ ଥିଲେ । କୁଳଦେବତା ଶ୍ରୀଶ୍ରୀରାଧାଗୋବିନ୍ଦ ଜିଉଙ୍କ ଠାରେ ତାଙ୍କର ଅଗାଧ ଭକ୍ତି ବାଲ୍ୟବୟସରୁ ସ୍ପଷ୍ଟ ଜଣା ପଡ଼ିଥିଲା । ଅବସର ସମୟରେ ସେ ଧର୍ମଗ୍ରନ୍ଥମାନ ପାଠ କରୁଥିଲେ । ବି. ଏ ପାଶ୍ କରିବା ପରେ ସେ ଓକିଲାତି ପଢ଼ିଲେ କିନ୍ତୁ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ଓଡ଼ିଶାର ତତ୍‌କାଳୀନ ସ୍କୁଲ ବିଭାଗୀୟ ଇନ୍‌ସପେକ୍ଟର ରାୟ ରାଧାନାଥ ରାୟ ବାହାଦୁରଙ୍କ ଚେଷ୍ଟାରେ ସେ କଟକ ପ୍ୟାରୀମୋହନ ଏକାଡେମୀ ସ୍କୁଲରେ ସହକାରୀ ଶିକ୍ଷକ ଓ ଢେଙ୍କାନାଳ ଉଚ୍ଚଇଂରାଜୀ ବିଦ୍ୟାଳୟରେ ସହକାରୀ ପ୍ରଧାନ ଶିକ୍ଷକ ହୋଇଥିଲେ ।

ଏଫ: ଏ: ପଢୁଥିବା ବେଳେ ପାର୍ବତୀଚରଣ ସୋର ଥାନା ବାଲେଶ୍ୱର ଗ୍ରାମ ନିବାସୀ ବାବାଜୀ ଶ୍ରୀ ଗୋପୀନାଥ ଦାସଙ୍କଠାରୁ ଶ୍ରୀକୃଷ୍ଣ ମନ୍ତ୍ର ଦୀକ୍ଷା ଗ୍ରହଣ କରିଥିଲେ ଏବଂ ସେହି ଦିନଠାରୁ ଆମିଷ ଆହାର ତ୍ୟାଗ କରିଥିଲେ ।

ତାଙ୍କର ସଂସାର ପ୍ରତି ଉଦାସୀନ ଭାବ ଦେଖି ତାଙ୍କୁ ସଂସାରୀ କରିବା ଅଭିପ୍ରାୟରେ ତାଙ୍କର ଅଭିଭାବକ ମାନେ ତାଙ୍କୁ ନିର୍ଦ୍ଦିଷ୍ଟ ବୟସରେ ବିବାହ କରାଇ ଦେଇଥିଲେ । ଯୋଗ୍ୟ ଲୋକକୁ ଯୋଗ୍ୟ ଲୋକ ଯୋଗାଇଦେବା ଭଗବାନଙ୍କର କାର୍ଯ୍ୟ । ତାଙ୍କର ସ୍ତ୍ରୀ ପ୍ରକୃତ ସହଧର୍ମିଣୀ ଭାବରେ ପାର୍ବତୀଚରଣଙ୍କୁ ଧର୍ମାନୁଶୀଳନ କରିବା ଦିଗରେ ସହଯୋଗ କରୁଥିଲେ । ପାର୍ବତୀଚରଣଙ୍କର ୪୩ କିମ୍ବା ୪୪ ବର୍ଷ ବୟସରେ ତାଙ୍କର ପତ୍ନୀ ବିୟୋଗ ଘଟିଲା । ସହଧର୍ମିଣୀଙ୍କ ପ୍ରତି ଗଭୀର ଶ୍ରଦ୍ଧା ସେ ତାଙ୍କ ରଚିତ "ପ୍ରଭୁ ଶ୍ୟାମାନନ୍ଦ" ଗ୍ରନ୍ଥର ଉତ୍ସର୍ଗପତ୍ରରେ ନିମ୍ନ ମତେ ବ୍ୟକ୍ତ କରିଯାଇଛନ୍ତି ।

* * *

ଜାଣ ପ୍ରିୟେ, ଭୁଲିନାହିଁ ମୁହିଁ କେତେବେଳେ
ସଦା ଜାଗୁଅଛି ମନେ ତୁମ ଗୁଣରାଶି
ଉଜ୍ଜ୍ୱଳତର ମୋ ଠାରେ ହୋଇ ପ୍ରତିଭାତ ।

ନ ଥିଲା ତ ରୁଚି ନାରୀପ୍ରିୟ ଅଳଙ୍କାରେ
କରିଥିଲ କୃଷ୍ଣଗୁଣ ଅଙ୍ଗ ଅଳଙ୍କାର ।

ନ ଥିଲା ମନରେ ଆଉ ତିଳେ ପୁତ୍ର ଶୋକ
ମାତା ପିତା ପୁତ୍ର ଧନ ଶ୍ରୀଗୌରାଙ୍ଗେ ଜାଣି ।

କରିଥିଲ ଧର୍ମପତ୍ନୀ ନାମଟି ସାର୍ଥକ
ହୋଇ ସତତ ସହାୟ ବୈଷ୍ଣବ ସେବନେ ।

* * *

ପତ୍ନୀ ବିୟୋଗ ପରେ ପାର୍ବତୀଚରଣ ତାଙ୍କର ଏକମାତ୍ର କନ୍ୟାର ବିବାହ କରାଇ ଦେଇ ପାରିବାରିକ ବନ୍ଧନରୁ ଏକ ପ୍ରକାର ପୂର୍ଣ୍ଣ ଅବ୍ୟାହତି ପାଇଲେ ।

ପାର୍ବତୀଚରଣ ଢେଙ୍କାନାଳ ହାଇସ୍କୁଲରେ ସହକାରୀ ପ୍ରଧାନ ଶିକ୍ଷକ ଥିବା ସମୟରେ ଢେଙ୍କାନାଳ ଷ୍ଟେଟ୍ କୋର୍ଟ ଅଫ୍ ଓ୍ୱାର୍ଡସ ଅଧୀନ ଥିଲା । ନାବାଳକ ରାଜା ସୁର ପ୍ରତାପଙ୍କର କଟକରେ ବିଦ୍ୟାଶିକ୍ଷାର ଭାରନେବାପାଇଁ ପାର୍ବତୀଚରଣ ନିଯୁକ୍ତ ହେଲେ । ପାର୍ବତୀଚରଣଙ୍କର ଅକୃତ୍ରିମ ସ୍ନେହ,

ସମୟୋପଯୋଗୀ ଉପଦେଶ ଏବଂ ସତର୍କ ଦୃଷ୍ଟି ବଳରେ ସୁର ପ୍ରତାପ ଜଣେ ଆଦର୍ଶ ରଜା ଭବରେ ସମସ୍ତଙ୍କର ଶ୍ରଦ୍ଧାଭଜନ ହୋଇ ପାରିଥିଲେ । ସାବାଳକ ହେବା ପରେ ସୁର ପ୍ରତାପ ଢେଙ୍କାନାଳର ରାଜ୍ୟଭାର ଗ୍ରହଣ କଲେ ଏବଂ ପାର୍ବତୀଚରଣଙ୍କୁ ରାଜପ୍ରାସାଦରେ ସୁପରିନ୍‌ଟେଣ୍ଡେଣ୍ଟ ଭବରେ ନିଯୁକ୍ତ କଲେ । କିଛି ଦିନ ପରେ ସେ ସହକାରୀ ଦେଓ୍ୱାନ ଭବରେ ନିଯୁକ୍ତି ପାଇଲେ ।

ପାର୍ବତୀଚରଣ ସତ୍ୟନିଷ୍ଠ ଓ ଧର୍ମପରାୟଣ ବ୍ୟକ୍ତି ଥିବାରୁ ଶାସନରେ ଅନ୍ୟାୟ, ଦୁର୍ନୀତି, ବ୍ୟଭିଚାର ଆଦି ପ୍ରବେଶ କରି ପାରୁ ନ ଥିଲା । ସେ ଢେଙ୍କାନାଳର ସହକାରୀ ଦେଓ୍ୱାନ୍ ଥିବା ସମୟରେ ଉକ୍ତ ରାଜ୍ୟରେ ଶିକ୍ଷା ବିସ୍ତାର ଦିଗରେ ଯଥେଷ୍ଟ ଧ୍ୟାନ ଦେଇଥିଲେ । ଶାସନର ଆଭ୍ୟନ୍ତରୀଣ ବ୍ୟାପାରରେ କିଛି ମାତ୍ର ଅବିଚାର ହେଉଥିବାର ଦେଖିଲେ ସେ ଅସ୍ଥିର ହୋଇ ପଡ଼ୁଥିଲେ ଏବଂ ଶୀଘ୍ର ପ୍ରତିକାର କରିବା ପାଇଁ ରଜା ସୁରପ୍ରତାପଙ୍କ ଉପରେ ଚାପ ଦେଉଥିଲେ ।

ସହକାରୀ ଦେଓ୍ୱାନ ଥିବା ସମୟରେ ସେ ଦେବୋତ୍ତର ବିଭାଗର ପରିଚାଳନା ଦାୟିତ୍ୱ ସ୍ୱେଚ୍ଛାରେ ଗ୍ରହଣ କରିଥିଲେ । ତାଙ୍କ ପରିଚାଳନାରେ ଢେଙ୍କାନାଳ ରାଜ୍ୟର ମନ୍ଦିର ମାନଙ୍କରେ ସେବା ପୂଜାର ବ୍ୟବସ୍ଥାରେ ଯଥେଷ୍ଟ ଉନ୍ନତି ଘଟିଥିଲା । ରଜା ସୁରପ୍ରତାପ ଧର୍ମପ୍ରାଣ ଥିଲେ ଏବଂ ପାର୍ବତୀଚରଣଙ୍କୁ ଗୁରୁତୁଲ୍ୟ ଭକ୍ତି କରୁଥିଲେ । ତାଙ୍କ ଚେଷ୍ଟାରେ ରାଜ-ବାଟୀରେ ପ୍ରତି ରବିବାର ଦିନ ହରିସଭା ବସୁଥିଲା । ସେଠାରେ ଧର୍ମଗ୍ରନ୍ଥ-ମାନ ପାଠ କରଯାଉଥିଲା । ମଝିରେ ମଝିରେ ଶ୍ରୀବୃନ୍ଦାବନ ଧାମର ବାବାଜୀମାନେ ଆସି ଧର୍ମାଲୋଚନା କରୁଥିଲେ ଓ ସଂକୀର୍ତ୍ତନାଦି କରୁଥିଲେ । ସେତେବେଳେ ଢେଙ୍କାନାଳ ଶ୍ରୀବୃନ୍ଦାବନଧାମ ତୁଲ୍ୟ ହରିନାମ - ମୁଖରିତ ହୋଇ ଉଠିଥିଲା ।

ପାର୍ବତୀଚରଣ ଛୁଟିରେ ଗାଁକୁ ଆସିଲେ କୁଳଦେବତା ଶ୍ରୀଶ୍ରୀରାଧାଗୋବିନ୍ଦ ଜିଉଙ୍କ ସେବା ଯେପରି ଉପଯୁକ୍ତ ଭବରେ ହୋଇ ପାରିବ ତହିଁର ବ୍ୟବସ୍ଥା କରୁଥିଲେ । ସେତେବେଳେ ସେବା ଦାୟିତ୍ୱରେ ଥିବା ତାଙ୍କର ଆତ୍ମୀୟ-

ମାନେ ଶ୍ରୀଶ୍ରୀଜିଉଙ୍କ ସେବାରେ ନାନା ପ୍ରକାର ତ୍ରୁଟି କରୁଥିବାର ଦେଖି ସେ ନିଜେ ସେ ଦାୟିତ୍ୱ ବହନ କରିବା ପାଇଁ ବହୁ ଦିନରୁ ସ୍ଥିର କରିଥିଲେ । ଶେଷରେ ୧୯୧୭ ମସିହାରେ ଘରକୁ ଆସି ମନ୍ଦିର ସେବାର ସମସ୍ତ ଭାର ନିଜେ ଗ୍ରହଣ କଲେ । ସେତେବେଳକୁ ତାଙ୍କର ପତ୍ନୀ ବିୟୋଗ ହୋଇ ଯାଇଥାଏ ଏବଂ ଏକମାତ୍ର କନ୍ୟାର ବିବାହ ମଧ୍ୟ ସରି ଯାଇଥାଏ । ସେ ପୈତୃକ ସମ୍ପତ୍ତିର ଅର୍ଦ୍ଧେକ ସାନଭାଇ ଶ୍ରୀ ମଧୁସୂଦନ ଦାସଙ୍କୁ ଦେଇ ନିଜର ଅର୍ଦ୍ଧେକ ଅଂଶ ଶ୍ରୀଶ୍ରୀଜିଉଙ୍କ ସେବା ପାଇଁ ଉତ୍ସର୍ଗ କରିଦେଲେ । ଏତଦ୍-ବ୍ୟତୀତ ନିଜର ମାସିକ ବେତନରୁ କିଛି ଅଂଶ ଠାକୁରଙ୍କ ସେବାରେ ବିନିଯୋଗ କରିବା ଫଳରେ ମନ୍ଦିରର ସେବା ସୁଶୃଙ୍ଖଳ ରୂପେ ସମ୍ପନ୍ନ ହୋଇ ପାରିଲା ।

୧୯୧୮ ମସିହା ପାର୍ବତୀଚରଣଙ୍କ ଜୀବନରେ ଏକ ବିରାଟ ପରିବର୍ତ୍ତନ ଘଟାଇଲା । ଏହା ପୂର୍ବରୁ ନିଜର ପତ୍ନୀଙ୍କ ମୃତ୍ୟୁ ଏବଂ ଏକମାତ୍ର କନ୍ୟାର ବିବାହ ପରେ ତାଙ୍କ ପାରିବାରିକ ବନ୍ଧନ ଛିନ୍ନ ହୋଇଯାଇଥିଲା । ପୈତୃକ ଭୂସମ୍ପତ୍ତିର ନିଜର ଅଂଶ ବାବଦ ସମସ୍ତ ଠାକୁରଙ୍କ ସେବା ପାଇଁ ଉତ୍ସର୍ଗ କରି ଦେବାରେ ତାଙ୍କର ସଂସାର ଦାୟିତ୍ୱ ଆଉ କିଛି ରହିଲା ନାହିଁ । ରାଜା ସୁର ପ୍ରତାପଙ୍କ ଶ୍ରଦ୍ଧା ଓ ଭକ୍ତି ତାଙ୍କୁ କିଛିଟା ସଂସାରରେ ବାନ୍ଧି ରଖିଥିଲା । ମାତ୍ର ୧୯୧୮ ମସିହା ଅକ୍ଟୋବର ମାସ ରାଜା ସୁରପ୍ରତାପ ସାମାନ୍ୟ ଇନ୍ ଫ୍ଲୁଏଞ୍ଜା ରୋଗରେ ପୀଡ଼ିତ ହୋଇ ହଠାତ୍ ପ୍ରାଣତ୍ୟାଗ କରିବାରେ ପାର୍ବତୀଚରଣଙ୍କର ସମସ୍ତ ସାଂସାରିକ ବନ୍ଧନ ଛିନ୍ନ ହୋଇଗଲା । ଢେଙ୍କାନାଳରେ କ୍ଷଣେ ମାତ୍ର ରହିବା ପାଇଁ ତାଙ୍କୁ ସୁଖ ଲାଗିଲା ନାହିଁ । ସେ ତିନି ମାସ ଛୁଟି ନେଇ ଶ୍ରୀବୃନ୍ଦାବନ ଧାମକୁ ଚାଲିଗଲେ ଏବଂ ସେଠାରୁ ନିଜର ଇସ୍ତଫା ପତ୍ର ପଠାଇଦେଲେ । ସକଳ ପ୍ରକାର ସାଂସାରିକ ବନ୍ଧନମୁକ୍ତ ହୋଇ ସେ ପୂଜ୍ୟପାଦ ବାବାଜୀ ଶ୍ରୀମଦ୍ ଶ୍ରୀମନୋହର ଦାସଙ୍କଠାରୁ ସନ୍ୟାସ ଦୀକ୍ଷା ଗ୍ରହଣ କଲେ । ସେହି ଦିନ ଠାରୁ ତାଙ୍କର ପାର୍ବତୀଚରଣ ନାମ ଆଉ ରହିଲା ନାହିଁ । ସନ୍ୟାସ ନେବା ପରେ ତାଙ୍କର ନାମ ହେଲା ବାବାଜି ପଦ୍ମଚରଣ ଦାସ । ତାଙ୍କର କର୍ତ୍ତବ୍ୟ ନିଷ୍ଠାରେ ସନ୍ତୁଷ୍ଟ ହୋଇ ତଦାନୀନ୍ତନ

ପଲିଟିକେଲ ଏଜେଣ୍ଟ ତାଙ୍କୁ ମାସିକ ପଚାଶ ଟଙ୍କା ପେନସନ ପ୍ରଦାନ କଲେ । ଯାହାକି ବର୍ତ୍ତମାନର ମୁଦ୍ରାସ୍ଫିତି କାଳରେ ୫ ହଜାର ହେବ ।

୧୯୭୦ ମସିହା ଦୁର୍ଗାପୂଜା ବେଳେ ବାବାଜୀ ପଦ୍ମଚରଣ ନିଜ ଗାଁକୁ ଫେରି ଆସିଲେ । ତାଙ୍କର ଆସିବାର ଚାରିଦିନ ପୂର୍ବରୁ ତାଙ୍କ ପାଳିକା ମା ବିଶାଖା ଦେଈଙ୍କର ମୃତ୍ୟୁ ହୋଇଥିଲା । ସ୍ତ୍ରୀଙ୍କର ମୃତ୍ୟୁ ସଙ୍ଗେ ସଙ୍ଗେ ତାଙ୍କ ସ୍ୱାମୀ କୃଷ୍ଣଚରଣ ଅସୁସ୍ଥ ହୋଇ ପଡ଼ିଲେ । ରୋଗ ଶଯ୍ୟାରେ ପଡ଼ି ସେ ପାର୍ବତୀଚରଣଙ୍କୁ ଦେଖିବା ପାଇଁ ବ୍ୟାକୁଳ ହେଉଥିଲେ । ବାବାଜୀ ପଦ୍ମଚରଣ ପହଞ୍ଚିଲା ମାତ୍ରେ କୃଷ୍ଣଚରଣଙ୍କୁ ଦେଖିବାକୁ ଗଲେ । ମୁଣ୍ଡିତ ମସ୍ତକ, ବହିର୍ବାସ ପରିହିତ ସନ୍ନ୍ୟାସୀ ପାର୍ବତୀଚରଣଙ୍କୁ ଦେଖି କୃଷ୍ଣଚରଣ ଅତିଶୟ ଅଧିର ହୋଇ ପଡ଼ିଲେ । ତାଙ୍କ ଆଖିରୁ ଦୁଇଟୋପା ଲୁହ ଗଡ଼ି ପଡ଼ିଲା ଏବଂ ସେହି ମୁହୂର୍ତ୍ତରେ କୃଷ୍ଣଚରଣ ଶେଷ ଥର ପାଇଁ ଆଖି ବୁଜି ଦେଲେ ।

ବାବାଜୀ ପଦ୍ମଚରଣ ଗାଁ ମୁଣ୍ଡରେ ଖଣ୍ଡିଏ ମଠ ନିର୍ମାଣ କରି ସେଠାରେ ଅବସ୍ଥାନ କଲେ ଏବଂ ଶ୍ରୀଶ୍ରୀରାଧାଗୋବିନ୍ଦ ଜିଉଙ୍କ ସେବାରେ ନିଜକୁ ନିୟୋଜିତ କଲେ । ପ୍ରତିଦିନ ସାଧୁ, ସନ୍ନ୍ୟାସୀ, ଭକ୍ତ, ପଣ୍ଡିତମାନେ ଦଳ ଦଳ ହୋଇ ସେଠାକୁ ଆସି ବାବାଜୀ ପଦ୍ମଚରଣଙ୍କ ସହିତ ଧର୍ମାଲୋଚନା କରିବାକୁ ଲାଗିଲେ । ସନ୍ନ୍ୟାସ ନେବା ପୂର୍ବରୁ ସେ ଅଳ୍ପ କେତେ ଖଣ୍ଡ ଧର୍ମଗ୍ରନ୍ଥ ରଚନା କରିଥିଲେ । ନିଜ ଗାଁରେ ମଠ ସ୍ଥାପନ କରି ଅବସ୍ଥାନ କରିବା ସମୟରେ ସେ ଅନ୍ୟ ସମସ୍ତ ଧର୍ମଗ୍ରନ୍ଥ ରଚନା କଲେ । ଓଡ଼ିଆ ଭାଷାରେ ଶ୍ରୀଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥକୁ ଅନୁବାଦ କରିବାରେ ବାବାଜୀ ପଦ୍ମଚରଣ ହେଉଛନ୍ତି ପ୍ରଥମ । ଶ୍ରୀମଦ୍ ସନାତନ ଗୋସ୍ୱାମୀ ବିରଚିତ 'ଶ୍ରୀବୃହତ ଭାଗବତାମୃତ'ର ବ୍ୟାଖ୍ୟା ଅନୁବାଦ କରି ସେ ଏହି ଗ୍ରନ୍ଥଟିକୁ ଉତ୍କଳୀୟମାନଙ୍କଠାରେ ପରିଚିତ କରାଇଛନ୍ତି । ନାଟ୍ୟକାର ହିସାବରେ ତାଙ୍କ ରଚିତ' ଶ୍ରୀ ପ୍ରତାପରୁଦ୍ର ନାଟକ । କଂସବଧ ନାଟକ ଏବଂ ଶ୍ରୀଶ୍ରୀ ରାଧାଗୋବିନ୍ଦ କେଳି ବିଳାସ' (ନାଟକ ଓ ଯାତ୍ରା) ସେ ସମୟରେ ଓଡ଼ିଶାର ପୁରପଲ୍ଲୀରେ ଆଦର ସହକାରେ ଅଭିନୀତ ହେଉଥିଲା । 'ଓଡ଼ିଆ

କୀର୍ତ୍ତନ' ରଚନା ଓ ପ୍ରକାଶ କରିବା ଦ୍ୱାରା ଉତ୍କଳର ମନ୍ଦିରମାନଙ୍କରେ ବଙ୍ଗଳା କୀର୍ତ୍ତନ ପରିବର୍ତ୍ତରେ ଓଡ଼ିଆ ଭାଷାରେ କୀର୍ତ୍ତନ ଗାନର ପ୍ରବର୍ତ୍ତକ ହେଉଛନ୍ତି ବାବାଜୀ ପଦ୍ମଚରଣ । ମହାପୁରୁଷମାନଙ୍କର ଜୀବନ ଚରିତ ଉତ୍କଳୀୟ ମାନଙ୍କୁ ଅବହିତ କରିବା ଉଦ୍ଦେଶ୍ୟରେ ତାଙ୍କ ରଚିତ ଶ୍ରୀକୃଷ୍ଣ' ଶ୍ରୀଗୌରାଙ୍ଗ, 'ଉତ୍କଳେ ଶ୍ରୀକୃଷ୍ଣ ଚୈତନ୍ୟ, ଶ୍ରୀଶ୍ରୀରାୟ ରାମାନନ୍ଦ, ପ୍ରଭୁ-ଶ୍ୟାମାନନ୍ଦ, ପ୍ରଭୁ ରସିକାନନ୍ଦ ଦେବ' ଓ' ଠାକୁର ଶ୍ରୀହରିଦାସ ପୁସ୍ତକମାନ ଆଜି ପ୍ରକାଶ ଅପ୍ରକାଶିତ ହୋଇ ରହିଛି । ବିଭିନ୍ନ ପର୍ବପର୍ବାଣୀରେ ଓଡ଼ିଶୀ ରାଗ-ରାଗିଣୀରେ ଶ୍ରୀଶ୍ରୀରାଧାକୃଷ୍ଣଙ୍କ ସମ୍ମୁଖରେ ଗାନ କରିବା ପାଇଁ ସେ ଯେଉଁ ସଙ୍ଗୀତ ହାରାବଳୀ' ରଚନା କରି ଯାଇଛନ୍ତି । ତହିଁର ସଙ୍ଗୀତମାନ କୌଣସି ଦୃଷ୍ଟିରୁ କବିସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ ଏବଂ ବନମାଳୀଙ୍କ ରଚନାଠାରୁ ଊଣା ନୁହେଁ । ଏତଦ୍‌ବ୍ୟତୀତ ସେ ଶ୍ରୀଚୈତନ୍ୟ ଚନ୍ଦ୍ରାମୃତ ଅନୁବାଦ ଓ ବ୍ରଜବିହାର ପ୍ରକାଶିତକରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ଯାଇଛନ୍ତି । ସର୍ବୋପରି ସେ' ଭକ୍ତିକଥା' ରଚନା କରି ଉତ୍କଳ ବାହାରେ ମଧ୍ୟ ପ୍ରତିଷ୍ଠା ଲାଭ କରି ପାରିଛନ୍ତି । ତାଙ୍କ ରଚିତ ଏହି ଭକ୍ତିକଥା' ଏତେ ଉପାଦେୟ ହୋଇଛି ଯେ ସେ ସମୟର ପରିସ୍ଥିତିରେ ମଧ୍ୟ ତାହା ବଙ୍ଗଳା ଭାଷାରେ ଅନୁବାଦିତ ହୋଇ ବହୁଜନ ଆଦୃତ ହୋଇ ପାରିଥିଲା । ଯେତେ ଦୂର ମନେ ହୁଏ ବାବାଜୀ ପଦ୍ମଚରଣଙ୍କ ରଚିତ ଭକ୍ତିକଥା ହିଁ ପ୍ରଥମ ଓଡ଼ିଆ ପୁସ୍ତକ ଯାହାକି ବଙ୍ଗଳା ଭାଷାରେ ପ୍ରଥମ କରି ୧୯୨୨ ମସିହାରେ ଅନୁବାଦିତ ହୋଇଥିଲା ଏବଂ ଆଦର ଲାଭ କରିଥିଲା ।

ଗାଁରେ ରହିଥିବା ସମୟରେ ବାବାଜୀ ପଦ୍ମଚରଣ ପୁଣି ନାନାପ୍ରକାର ସମାଜ ସେବାରେ ନିଜକୁ ନିୟୋଜିତ କରିଥିଲେ । ଗାଁରେ କୂଅ, ପୋଖରୀ ଆଦି ଖୋଳାଇ ଜଳାଭାବ ଦୂର କରିଥିଲେ । ଗରିବ ଛାତ୍ରମାନଙ୍କୁ ଆର୍ଥିକ ସାହାଯ୍ୟ ଦେଇ ସେମାନଙ୍କୁ ଶିକ୍ଷିତ ହେବାରେ ସାହାଯ୍ୟ କରୁଥିଲେ ।

ଶେଷ ଜୀବନରେ ବାବାଜୀ ପଦ୍ମଚରଣ ପୁଣି ଏକ ସାଂସାରିକ ଘାତପ୍ରତିଘାତର ସମ୍ମୁଖୀନ ହେଲେ । ତାଙ୍କର ଏକମାତ୍ର ବିବାହିତା

କନ୍ୟାର ସ୍ୱାମୀ-ବିୟୋଗ ହୁଅନ୍ତେ ଶ୍ୱଶୁର ଘରେ ରହିବା ତାଙ୍କ କନ୍ୟାଙ୍କ ପକ୍ଷରେ ସମ୍ଭବ ହୋଇ ପାରିଲା ନାହିଁ । ସେହି କାରଣରୁ ବାବାଜୀ ପଦ୍ମଚରଣ ଝିଅକୁ ଗାଁକୁ ନେଇ ଆସି ନିଜ ସାନ ଭାଇଙ୍କ ପାଖରେ ରଖାଇଲେ ଏବଂ ମନ୍ଦିରର ସମସ୍ତ ସେବା ଦାୟିତ୍ୱ ଝିଅ ବ୍ରଜଦାସୀ ଉପରେ ଅର୍ପଣ କରି ଶେଷ ଜୀବନ ଶ୍ରୀବୃନ୍ଦାବନଧାମରେ କଟାଇବା ପାଇଁ ୧୯୩୭ ମସିହା ଅଗଷ୍ଟ ମାସରେ ଗାଁରୁ ବିଦାୟ ନେଇ ଚାଲିଗଲେ ।

ଶ୍ରୀବୃନ୍ଦାବନରେ ଯାଇ ବାବାଜୀ ପଦ୍ମଚରଣ "ଗୋପାଳ ଛଡ଼ିଦାର ଠଉର୍" ନାମକ ଏକ ମଠରେ ରହିଲେ ଏବଂ ଧର୍ମଗ୍ରନ୍ଥ ପାଠ, ଶାସ୍ତ୍ର ଆଲୋଚନା ଏବଂ ନାମ ସଂକୀର୍ତ୍ତନମଧ୍ୟେ ଶେଷ ଜୀବନ କଟାଇବାକୁ ଲାଗିଲେ ।

ଗାଁ ମନ୍ଦିର ସେବାରେ କେତେକ ଅସୁବିଧା ବିଷୟ ବ୍ରଜଦାସୀ ତାଙ୍କୁ ଚିଠିଦ୍ୱାରା ଜଣାଇବାରୁ ସେ ତାହା ଜାଣି ଅସ୍ଥିର ହୋଇ ପଡ଼ିଲେ ଏବଂ ଗାଁକୁ ଫେରି ୧ ସି ଶ୍ରୀଶ୍ରୀରାଧାଗୋବିନ୍ଦ ଜୀଉଙ୍କ ସେବା ବ୍ୟବସ୍ଥା ଆଉ ଥରେ ସଜାଡ଼ି ଦେଇଯିବା ପାଇଁ ତାଙ୍କ ମନରେ ପ୍ରବଳ ଆକାଂକ୍ଷା ଜାଗି ଉଠିଲା । ଏଣେ ଶ୍ରୀବୃନ୍ଦାବନଧାମ ଛାଡ଼ି ଆସିବା ପାଇଁ ତାଙ୍କର ଟିକିଏ ହେଲେ ମନ ନଥାଏ । ଏହି ଦ୍ୱନ୍ଦରେ ପଡ଼ି ସେ କାନ୍ଦି କାନ୍ଦି ପ୍ରାଣର ଠାକୁରଙ୍କୁ ଜଣାଇଲେ – " ହେ ଗୌର, ହେ ନିତାଇ, ମୋତେ ପୁଣି ବ୍ରଜଧାମରୁ ଅନ୍ତର କରୁଛ" । ଏହି ଅବସ୍ଥାରେ ଅକ୍ଟୋବର ତା ୫ ରିଖ ସନ୍ଧ୍ୟାରେ ତାଙ୍କର ପେଟନରା ରୋଗ ବହୁଦିନ ପରେ ପୁଣି ଦେଖା ଦେଲା ଓ ତତ୍‌ପରଦିନ ଅର୍ଥାତ୍ ୧୯୪୦ ମସିହା ଅକ୍ଟୋବର ୭ ତାରିଖ ଭୋର ୪ଟା ବେଳେ ସେହି ଶ୍ରୀବୃନ୍ଦାବନଧାମରେହିଁ ତାଙ୍କର ବୃନ୍ଦାବନପ୍ରାପ୍ତି ହେଲା । ଉପରୋକ୍ତ ମଠରେ ତାଙ୍କର ସମାଧି ଆଜି ମଧ୍ଯ ରହିଛି ।

ବାବାଜୀ ପଦ୍ମଚରଣଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଯେଉଁମାନେ ଆସିଛନ୍ତି, ସେମାନେ କହନ୍ତି ଯେ ସେ ଥିଲେ ପ୍ରକୃତ ପକ୍ଷରେ ପରମ ବୈଷ୍ଣବ । ଶ୍ରୀମଦ୍‌ଭାଗବତରେ ବୈଷ୍ଣବଙ୍କର ଯେଉଁ ଏକୋଇଶିଟି ଗୁଣ ବର୍ଣ୍ଣିତ

ହୋଇଛି, ସେ ସମସ୍ତର ମୂର୍ତ୍ତିମାନ ଥିଲେ ବାବାଜୀ ପଦ୍ମଚରଣ, ଯଥା-

ସମଦରଶୀ ସତ୍ୟ ସାର, ଶୁଦ୍ଧ ବିବେକ ମତିଯାର ॥
ଦ୍ରୋହବର୍ଜିତ ଶାନ୍ତିପର, ତ୍ୟାଗ ସ୍ୱଭବ ମହୀଧର ॥
କୃପାଳୁ ସର୍ବଲୋକହିତ, ଶୁଚି ପବିତ୍ର ଦୃଢବ୍ରତ ॥
ଅନ୍ତ ଭୋଜନେ ମନସ୍ଥିର, ମୃଦୁ ପ୍ରସନ୍ନ ଗତାଶ୍ରର ॥
ସକାନ୍ତ ଅମାନୀ ଆନନ୍ଦ, କବି ପଣ୍ଡିତ ଶୁଦ୍ଧ ବୁଦ୍ଧ ॥
ଚିତ୍ତ ସକାନ୍ତ ଅପ୍ରମାଦୀ, ଗମ୍ଭୀରଚିତ୍ତ ଧୀରବୁଦ୍ଧି ॥
ଏ ବଇଷ୍ଣବର ଲକ୍ଷଣ, ସତ୍ୟାଦି ଏକବିଂଶ ଗୁଣ ॥
—ଶ୍ରୀମଦ୍‌ଭଗବତ, ୧୧ ଶ ସ୍କନ୍ଧ, ଦ୍ୱାଦଶ ଅଧ୍ୟାୟ ॥

ବାବାଜୀ ପଦ୍ମଚରଣ ଆଜିକୁ ୪୪ବର୍ଷ ହେଲା ଏ ଧରାଧାମରୁ ବିଦାୟ ନେଲେଣି । ତାଙ୍କର ଆଦରର ମଠଟି ସମ୍ପୂର୍ଣ୍ଣ ରୂପେ ଧୂଳିସାତ୍ ହୋଇ ଗଲାଣି । ପୁନଃମୁଦ୍ରଣ ଅଭାବରୁ ଏ ଜାତି ତାଙ୍କ ରଚନାବଳୀକୁ ଭୁଲିଗଲାଣି । କେହି ଅବା ତାଙ୍କର ଲେଖାର କେତେକ ଅଂଶକୁ ନକଲ କରି ନିଜ ନାମରେ ଅନ୍ୟ ବହି ପ୍ରକାଶ କଲେଣି । ବାବାଜୀ ପଦ୍ମଚରଣଙ୍କର କବିତ୍ୱ ଅନନ୍ୟସାଧାରଣ । ସାହିତ୍ୟ କ୍ଷେତ୍ରରେ ଦେଖିବାକୁ ମିଳେ ଯେ କବିମାନେ ସାଧାରଣତଃ ଗୋଟିଏ ପ୍ରକାର ସାହିତ୍ୟ ରଚନା କରିଥାନ୍ତି, କେହି କାବ୍ୟକାରତ କେହି ନାଟ୍ୟକାର, କେହି ଔପନ୍ୟାସିକ ତ କେହି ପ୍ରାବନ୍ଧିକ, କେହି ଗୀତିକାର ତ କେହି ଅନୁବାଦକ କିନ୍ତୁ ବାବାଜୀ-ପଦ୍ମଚରଣ ଏକାଧାରରେ ସମସ୍ତ ପ୍ରକାର ସାହିତ୍ୟ ସୃଷ୍ଟି କରି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ରେକର୍ଡ ସୃଷ୍ଟି କରିଥିଲେ । ତାଙ୍କ ରଚନାବଳୀ କଅଣ ଏହିପରି ଅବହେଳିତ ହୋଇ ଦିନେ ଧରାଧାମରୁ ବିଲୁପ୍ତ ହୋଇଯିବ ? ଏ ପ୍ରକାର ପ୍ରତିଭାକୁ ଅକ୍ଷୁଣ୍ଣ ରଖିବା ପାଇଁ ଏ ଜାତିର କଅଣ କିଛି କର୍ତ୍ତବ୍ୟ ଓ ଦାୟିତ୍ୱ ନାହିଁ ?

* *

# ସାହିତ୍ୟ କୃତି

## ପ୍ରକାଶକ ଓ ଅନୁବାଦକ ଭାବରେ ସାହିତ୍ୟ କ୍ଷେତ୍ରକୁ ପ୍ରବେଶ

ବାବାଜୀ ପଦ୍ମଚରଣ ୧୯୧୮ ମସିହାରେ ସନ୍ନ୍ୟାସ ନେଇଥିଲେ ହେଁ ତହିଁର ଯଥେଷ୍ଟ ପୂର୍ବରୁ ବୈଷ୍ଣବ ଶାସ୍ତ୍ରମାନ ପାଠ କରି ସେ ସମସ୍ତର ସାରବସ୍ତୁ ଅଧିଗତ କରିଥିଲେ । କବି ସାହିତ୍ୟିକ ଭାବରେ ତାଙ୍କର ପ୍ରତିଭାର ବିକାଶ ହେଲା ଏକ ତାଳପତ୍ର ପୋଥିର ପ୍ରକାଶନ ମାଧ୍ୟମରେ । ଏହା ୧୯୦୯ ମସିହାର କଥା । ଏହି ପ୍ରକାଶନ ଅନ୍ତରାଳରେ ତାଙ୍କ ଧର୍ମ-ପତ୍ନୀଙ୍କର ପ୍ରେରଣାହିଁ ମୂଳ ବୋଲି ସେ ତାଙ୍କ ରଚିତ ପ୍ରଭୁ ଶ୍ରୀ ଶ୍ୟାମାନନ୍ଦ ପୁସ୍ତକର ଉତ୍ସର୍ଗପତ୍ରରେ ଉଲ୍ଲେଖ କରିଛନ୍ତି । ସେ ଲେଖିଛନ୍ତି—

ନ ଥିଲା ମାନସ ମମ ଲେଖନୀ ଧାରଣେ
ସତତ ଅଯୋଗ୍ୟ ପାତ୍ର ମଣି ଆପଣାକୁ
କିନ୍ତୁ ଦେଖିଲି ଯେବେ ମୁଁ ଲଳାୟିତା ତୁମ୍ଭେ
ଭକ୍ତିଗ୍ରନ୍ଥ ଅଧ୍ୟୟନେ, ବଳିଲା ମାନସ —
ଆହରିବି ପୂର୍ବ କବି ସାହିତ୍ୟ ଭଣ୍ଡାର
ଖୋଜୁ ଖୋଜୁ ପଡ଼ିଗଲା ନୟନେ ମୋହର
ସୁରସ କବିତା ଅତି ସରଳ ମଧୁର
ନାରୀଜନ ଉପଯୋଗୀ ସେ ବ୍ରଜବିହାର
ପ୍ରକାଶିଲି ତାହା ମଜ୍ଜି ଆନନ୍ଦସାଗରେ

ଏହି 'ବ୍ରଜବିହାର' କାବ୍ୟ ରଣପୁର ନିବାସୀ ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା ରଚିତ । ପଦ୍ମଚରଣ ଢେଙ୍କାନାଳ ରାଜଦରବାରରେ ଚାକିରି କରୁଥିବା ସମୟରେ ଏହି ରାଜବଂଶର ରାଜଗୁରୁଙ୍କ ମଠରୁ ଏହି 'ବ୍ରଜବିହାର' କାବ୍ୟର ଖଣ୍ଡିଏ ତାଳପତ୍ର ଲେଖା ପୁସ୍ତକ ପ୍ରାପ୍ତ ହୋଇଥିଲେ । ଏହାର ରଚନା ପ୍ରଣାଳୀ ଅତି ସରସ ଓ ସରଳ ପଦାବଳୀରେ ବିମଣ୍ଡିତ ଥିବାରୁ ଏହାକୁ ମୁଦ୍ରାଙ୍କନ କରାଇବା ପାଇଁ ତାଙ୍କ ମନରେ ବାସନା ଜାଗି ଉଠିଲା । ଉକ୍ତ ତାଳପତ୍ର ପୋଥିରେ କେତେକ ଲିପିଗତ ପ୍ରମାଦ

ପ୍ରଦର୍ଶନ କରି ସେ ଅନ୍ୱେଷଣ ଦ୍ୱାରା ଅନ୍ୟସ୍ଥାନରୁ ଆଉ ଦୁଇଖଣ୍ଡ ଉକ୍ତ ପୋଥି ସଂଗ୍ରହ କଲେ ଏବଂ ତିନୋଟିକୁ ମିଳାଇ ଅସଙ୍ଗତି ଓ ବର୍ଣ୍ଣାଶୁଦ୍ଧି ସଂଶୋଧନ କରି ଏହି ଗ୍ରନ୍ଥକୁ ସେ ପ୍ରକାଶ କରି ଲୋକ-ଲୋଚନଗୋଚର କରାଇଲେ । ଏହାର ମୁଦ୍ରଣ ବ୍ୟୟ ଢେଙ୍କାନାଳର ରାଜମାତା ବହନ କରିଥିଲେ । ଏହି ଗ୍ରନ୍ଥ ଦୁଇଟି ଭାଗରେ ପ୍ରକାଶିତ । ଏହି ଗ୍ରନ୍ଥରେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ସଂକ୍ଷିପ୍ତ ଭାବରେ ଏବଂ ଶ୍ରୀରାଧା ଓ ଗୋପୀମାନଙ୍କ ସହିତ କୁଞ୍ଜଲୀଳାଦି ବିସ୍ତୃତଭାବରେ ବର୍ଣ୍ଣିତ ହୋଇଛି । ତାଙ୍କ ଜୀବଦ୍ଦଶାରେ ଏହି ଗ୍ରନ୍ଥର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଥିଲା ।

ପ୍ରକାଶକ ଭାବରେ ସାହିତ୍ୟ କ୍ଷେତ୍ରରେ ପ୍ରବେଶ କରିବା ପରେ ବାବାଜୀ ପଦ୍ମଚରଣ ଆରମ୍ଭ କଲେ ଅନ୍ୟ ଭାଷାରେ ଲିଖିତ ଧର୍ମଗ୍ରନ୍ଥର ଅନୁବାଦ । ତାଙ୍କର ପ୍ରଥମ ଅନୁବାଦ ହେଉଛି ମୂଳ ପଦ୍ୟାନୁବାଦ ସହ 'ଶ୍ରୀ ଚୈତନ୍ୟଚନ୍ଦ୍ରାମୃତ' । ଏ ସମ୍ବନ୍ଧରେ ସେ ଲେଖିଛନ୍ତି—

କରନ୍ତେ ସାହିତ୍ୟ କ୍ଷେତ୍ରେ ଏମନ୍ତ ପ୍ରବେଶ
ନିୟୋଜିଲେ ପ୍ରଭୁ ମୋତେ, କରିବାକୁ ନିଜ
ଲେଖନୀ ଚାଳନା, ପାତି ଅପୂର୍ବ କୌଶଳ
ପ୍ରକାଶିଛି ତାହା, ଚନ୍ଦ୍ରାମୃତ ଭୂମିକାରେ ।

ଅନୁବାଦ କ୍ଷେତ୍ରରେ ବାବାଜୀ ପଦ୍ମଚରଣଙ୍କର ପୂଜ୍ୟପାଦ କୃଷ୍ଣଦାସ କବିରାଜ ଗୋସ୍ୱାମୀଙ୍କ ବିରଚିତ "ଶ୍ରୀଶ୍ରୀଚୈତନ୍ୟଚରିତାମୃତ ହିଁ ସର୍ବବୃହତ ଓ ସର୍ବପ୍ରଧାନ । ଏହି ଅମୂଲ୍ୟ ଗ୍ରନ୍ଥରେ ବୈଷ୍ଣବଧର୍ମର ସିଦ୍ଧାନ୍ତମାନ ଉତ୍ତମ ରୂପେ ମୀମାଂସିତ ଓ ଶ୍ରୀମନ୍ ମହାପ୍ରଭୁ ଶ୍ରୀଶ୍ରୀଚୈତନ୍ୟ ଦେବଙ୍କର ଲୀଳାମାନ ବର୍ଣ୍ଣିତ ହୋଇଛି । ବଙ୍ଗଳା ଅକ୍ଷରରେ ଏହି ଗ୍ରନ୍ଥର ବହୁବିଧ ସଂସ୍କରଣ ବାହାରିଥିଲେ ହେଁ ବଙ୍ଗଭାଷା ଅନଭିଜ୍ଞ ଉତ୍କଳୀୟମାନେ ଏହି ମହାନ୍ ଗ୍ରନ୍ଥ ପାଠ କରିବାରୁ ବଞ୍ଚିତ ହେଉଥିଲେ । ବାବାଜୀ ପଦ୍ମଚରଣ ବହୁ ପରିଶ୍ରମ କରି ଶ୍ଳୋକମାନଙ୍କର ପ୍ରସିଦ୍ଧ ଟୀକା,

ପୂଜ୍ୟପାଦ ଶ୍ରୀଯୁକ୍ତ ବିଶ୍ୱନାଥ ଚକ୍ରବର୍ତ୍ତୀକୃତ ପୟାର ମାନଙ୍କର ସଂସ୍କୃତ ଟୀକା, ସେ ସମସ୍ତର ଓଡ଼ିଆ ଅନୁବାଦ ଓ ବିଶେଷ କରି ତାଙ୍କର ନିଜସ୍ୱ ସଜ୍ଜନ–ତୋଷିଣୀ ନାମ୍ନୀ ବିସ୍ତୃତ ତାତ୍ପର୍ଯ୍ୟ ବ୍ୟାଖ୍ୟା ସହ ଗ୍ରନ୍ଥଟି ପ୍ରକାଶ କରିବା ଦ୍ୱାରା ଯୁଗଯୁଗକୁ ଉତ୍କଳୀୟମାନଙ୍କ ପାଇଁ ଏହି ଗ୍ରନ୍ଥକୁ ବୋଧଗମ୍ୟ କରାଇଗଲେ । ଏହି ଗ୍ରନ୍ଥ ତିନିଖଣ୍ଡରେ ପ୍ରକାଶିତ । ପ୍ରଥମ ସଂସ୍କରଣର ମୁଦ୍ରଣବ୍ୟୟ ଢେଙ୍କାନାଳର ତତ୍କାଳୀନ ଅଧୀଶ୍ୱର ଶ୍ରୀ ସୁର ପ୍ରତାପ ମହେନ୍ଦ୍ର ବାହାଦୂର ବହନ କରିଥିଲେ ।

ବାବାଜୀ ପଦ୍ମଚରଣଙ୍କର ଜୀବଦ୍ଦଶାରେ ୧୯୩୮ ମସିହାରେ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହୋଇଥିଲା । ଏହି ସମସ୍ତ ଗ୍ରନ୍ଥଟି ୯½ ଇଞ୍ଚ ଲମ୍ବ ଓ ୬ଇଞ୍ଚ ଚଉଡ଼ା ବିଶିଷ୍ଟ କାଗଜରେ ୨୦୫୦ ପୃଷ୍ଠା ସମ୍ବଳିତ । ଏଥିରୁ ଏହି ଗ୍ରନ୍ଥର ବିଶାଳତା ସହଜରେ ଅନୁମେୟ । ଏହି ଗ୍ରନ୍ଥଟି ଉତ୍କଳୀୟ ଭାଷାରେ ଅଦ୍ୱିତୀୟ । ଏହାର ତୃତୀୟ ସଂସ୍କରଣ ପାଇଁ ଆବଶ୍ୟକତା ଥିଲେ ମଧ୍ୟ ଅର୍ଥାଭାବ ଯୋଗୁଁ ଛପାହୋଇ ପାରୁନାହିଁ ।

ବାବାଜୀ ପଦ୍ମଚରଣଙ୍କର ପରବର୍ତ୍ତୀ ଅନୁବାଦ ରଚନା ହେଉଛି ଶ୍ରୀଲ ଶ୍ରୀ ସନାତନ ଗୋସ୍ୱାମୀଙ୍କ ବିରଚିତ ଶ୍ରୀବୃହତ୍ ଶ୍ରୀଭାଗବତାମୃତ । ଏହା ଦୁଇ ଭାଗରେ ପ୍ରକାଶିତ । ଅନୁବାଦଟି ଗଦ୍ୟାକାରରେ ଲିଖିତ । ଏହି ଗ୍ରନ୍ଥରେ ଭକ୍ତଙ୍କ ମହିମା, ଭକ୍ତିଦେବୀଙ୍କ ପ୍ରାଧାନ୍ୟ, ସ୍ୱର୍ଗରୁ ଆରମ୍ଭ କରି ବୈକୁଣ୍ଠ ଗୋଲକାଦି ସମସ୍ତ ଭଗବତ୍ ସ୍ଥାନମାନଙ୍କର ମହିମା ଓ ସେମାନଙ୍କର ତାରତମ୍ୟ, ସ୍ୱର୍ଗଠାରୁ ଗୋଲକ ପର୍ଯ୍ୟନ୍ତ ବିଭିନ୍ନ ରାଜ୍ୟରେ ଭଗବତ୍ ଶକ୍ତିର କି ରୂପ, କ୍ରମ ବିକାଶ ଓ କର୍ମଯୋଗ, ଜ୍ଞାନ ଏବଂ ଭକ୍ତି ପ୍ରଭୃତିର ମାହାତ୍ମ୍ୟ ଅତି ବିଷଦ ଭାବରେ ବର୍ଣ୍ଣିତ ହୋଇଛି । ଏହି ପୁସ୍ତକରେ ମୂଳ ଶ୍ଳୋକ ଦିଆ ନଯାଇ କେବଳ ମାତ୍ର ଟୀକାର ଅନୁବାଦ ଦିଆଯାଇଛି । ଏ ବିଷୟରେ କୈଫିୟତ୍ ଦେବାକୁ ଯାଇ ବାବାଜୀ ପଦ୍ମଚରଣ ଲେଖିଛନ୍ତି —" ଏହି ଗ୍ରନ୍ଥଟିରେ ମୂଳ ସଂସ୍କୃତ ସହ ଉତ୍କଳ ଅନୁବାଦ ଛପା ହୋଇଥିଲେ ଅତି ଉପାଦେୟ ହୋଇଥାନ୍ତା କିନ୍ତୁ ଅନୁବାଦ ଛପାଇବାକୁ ତ ଅର୍ଥ କୁଳାଉନାହିଁ, ମୂଳ ବା ଛପାଇବି କିପରି ?

# ମୌଳିକ ସାହିତ୍ୟ ସୃଷ୍ଟି—ନାଟକ

ଜଣେ ପ୍ରକାଶକ ଭବରେ ସାହିତ୍ୟ କ୍ଷେତ୍ରରେ ପ୍ରବେଶ କରିବା ପରେ ଦ୍ୱିତୀୟ ପର୍ଯ୍ୟାୟରେ ବାବାଜୀ ପଦ୍ମଚରଣ ଅନୁବାଦ ଦିଗରେ କାର୍ଯ୍ୟାରମ୍ଭ କରିଥିଲେ ବୋଲି ପୂର୍ବରୁ ବର୍ଣ୍ଣିତ ହୋଇଛି । ତାପରେ ସେ ତାଙ୍କର ନିଜର ମୌଳିକ ସାହିତ୍ୟ ସୃଷ୍ଟି ଆରମ୍ଭ କଲେ "ପ୍ରତାପରୁଦ୍ର ନାଟକ" ରଚନା କରି । ତାଙ୍କର ଏହି ପ୍ରଥମ ସୃଷ୍ଟିର ଭୂମିକା ଦେଇ ସେ ଲେଖିଛନ୍ତି —

"ଭଷାରେ ମୋର ଅଭିଜ୍ଞତା ନାହିଁ । ନାଟକ ରଚନା କରିବା ଅତ୍ୟନ୍ତ ଦୁରୁହ ବ୍ୟାପାର । ଅଳଙ୍କାର ଶାସ୍ତ୍ରରେ ବ୍ୟୁତପତ୍ତି ନ ହେଲେ କାବ୍ୟ ନାଟକ ରଚନା କରାଯାଇ ନ ପାରେ । ଅତଏବ ମୋ ପକ୍ଷରେ ଏ ଚେଷ୍ଟା ବିଡ଼ମ୍ବନା ମାତ୍ର । ଏ ଢେଙ୍କାନାଳରେ ନାଟ ମଞ୍ଚ ପ୍ରସ୍ତୁତ ହୋଇ ନାଟକ-ମାନ ଅଭିନୀତ ହେବାରୁ କୌଣସି ମହାନ୍ ଭକ୍ତଚରିତ ନିଜ ଭଷାରେ ରଚନା କରି ନିଜ ହୃଦୟର ଶୋଧନ କରିବି ଏହି ଇଛା ମନରେ ବଳବତୀ ହେଲା । ତେଣୁ ମହାନୁଭବ ଶ୍ରୀ କୃଷ୍ଣଦାସ କବିରାଜଙ୍କ ରଚିତ ଅଦ୍ୱିତୀୟ ମହାକାବ୍ୟ ଶ୍ରୀଚୈତନ୍ୟଚରିତାମୃତରୁ ମହାରାଜ ଶ୍ରୀ ପ୍ରତାପରୁଦ୍ର ଦେବଙ୍କ ଚରିତ ସଂଗ୍ରହ କରି ନାଟକାକାରରେ ପ୍ରକାଶ କଲି ।"

ବାବାଜୀ ପଦ୍ମଚରଣ ଥିଲେ ଜଣେ ଉଚ୍ଚକୋଟୀର ବୈଷ୍ଣବ । ତେଣୁ ତାଙ୍କର ସାହିତ୍ୟ ସୃଷ୍ଟି ଶ୍ରୀ ରାଧାକୃଷ୍ଣ ଲୀଳା, ଶ୍ରୀ ଚୈତନ୍ୟ ଦେବଙ୍କ ଚରିତ, ଭକ୍ତିବାଦ ଓ ବୈଷ୍ଣବ ସାଧୁସନ୍ଥମାନଙ୍କ ଜୀବନୀ ଉପରେ ଆଧାରିତ । ତାଙ୍କର ପ୍ରଥମ ମୌଳିକ ସୃଷ୍ଟି ଭକ୍ତ ପ୍ରବର ମହାରାଜ ପ୍ରତାପରୁଦ୍ର ଦେବଙ୍କ ଚରିତାବଳୀକୁ ଭିତ୍ତି କରି ପ୍ରକାଶ ପାଇଥିଲା ୧୯୧୩ ମସିହାରେ ତାଙ୍କର ପୂର୍ବାଶ୍ରମ ନାମ ଶ୍ରୀ ପାର୍ବତୀ ଚରଣ ଦାସଙ୍କ ନାମରେ । ଶ୍ରୀ ପ୍ରତାପରୁଦ୍ର ଦେବଙ୍କ ଚରିତକୁ ସେ ପ୍ରଥମ କରି କାହିଁକି ରୂପାୟିତ କଲେ ତହିଁର ଏକ କୈଫିୟତ୍ ସେ ଉକ୍ତ ନାଟକର ଭୂମିକାରେ ଦେଇଛନ୍ତି । ସେ ଲେଖିଛନ୍ତି—

" ମହାରାଜ ଶ୍ରୀ ପ୍ରତାପରୁଦ୍ର ଦେବ କାହ୍ନିକାବେରୀ ନାଟକର ନାୟକ ଓଡ଼ିଶାର ମହାରାଜ ଶ୍ରୀ ପୁରୁଷୋତ୍ତମ ଦେବଙ୍କ ପୁତ୍ର, କାଞ୍ଚୀ ରାଜତନୟା

ଦେବୀ ପଦ୍ମାବତୀ ଏହାଙ୍କର ଜନନୀ, ଜଗତ୍ ବିଖ୍ୟାତ ଶ୍ରୀଳ ଶ୍ରୀରାମାନନ୍ଦ ରାୟଙ୍କ କୃତ ଶ୍ରୀଜଗନ୍ନାଥବଲ୍ଲଭ ନାଟକ ଏବଂ କର୍ଣ୍ଣପୂରଙ୍କ ବିରଚିତ ସୁମଧୁର ଶ୍ରୀଚୈତନ୍ୟଚନ୍ଦ୍ରୋଦୟ ନାଟକ ଏବଂ ଚୈତନ୍ୟଚରିତ ମହାକାବ୍ୟ ଏମାନ ଏ ମହାରାଜଙ୍କ ଯଶୋରାଶି ଅତି ଉଚ୍ଚରେ ଘୋଷଣା କରୁଛନ୍ତି । କେବଳ ସେମାନ ସଂସ୍କୃତ ଥିବାରୁ ସେ ସୁଧା – ସମୁଦ୍ରରୁ କଣା ମାତ୍ର ଉତ୍ତୋଳନ କରି ସଂସ୍କୃତ ଅନଭିଜ୍ଞ ଓଡ଼ିଆ ଭ୍ରାତାମାନଙ୍କୁ ଉପହାର ଦେଲି ।"

ନାଟକ ରଚନା କରିବା ଅତ୍ୟନ୍ତ ଦୁରୂହ ବ୍ୟାପାର ବୋଲି କହୁଥିବା ବେଳେ ସେ ତାଙ୍କର ପ୍ରଥମ ସାହିତ୍ୟ ସୃଷ୍ଟିକୁ କାହିଁକି ଏକ ନାଟକ ଆକାରରେ ପ୍ରକାଶ କଲେ ତହିଁର କୌଣସି କାରଣ ସେ କୌଣସିଠାରେ ଉଲ୍ଲେଖ କରି ନ ଥିଲେହେଁ ନାଟକ ଦିଗରେ ପୂର୍ବ ସଂସ୍କାର ଓ ପରମ୍ପରାର ବଶବର୍ତ୍ତୀ ହୋଇ ସେ ଏହା କରିଥିବେ ବୋଲି ଅନୁମିତ ହୁଏ । ତାଙ୍କର ଜନ୍ମସ୍ଥାନ ଗୁହାରିଆସାହି ଗ୍ରାମ ନାଟକ ପରିବେଷଣ ଦିଗରେ ଅନେକ କାଳରୁ ପ୍ରସିଦ୍ଧି ଲାଭ କରି ଆସିଛି । ଯେତେବେଳେ ଓଡ଼ିଆ ଭାଷାରେ ନାଟକ ରଚିତ ହୋଇ ନ ଥିଲା ସେତେବେଳେ ଏ ଗ୍ରାମର ଅଧିବାସୀମାନେ ପର୍ବ-ପର୍ବାଣି ସମୟରେ ବଙ୍ଗଳା ଥିଏଟର କରୁଥିଲେ । ଓଡ଼ିଆ ନାଟକ ରଚନା ହେବା ପରେ ସେ ସମସ୍ତ ଅଭିନୟ କରି ଏଠାକାର ଗ୍ରାମବାସୀମାନେ ଖ୍ୟାତି ଅର୍ଜନ କରିଥିଲେ । ବର୍ତ୍ତମାନ ମଧ୍ୟ ଗାଁର ପିଲାମାନେ ପ୍ରତିବର୍ଷ ତିନି ଚାରି ଗୋଟି ନାଟକ ବହି ଥିଏଟର ଆକାରରେ ଅଭିନୟ କରିଥାନ୍ତି । ଯେତେହୁତ ମନେ ହୁଏ ଏହି ପରମ୍ପରା ଓ ସଂସ୍କାରର ବଶବର୍ତ୍ତୀ ହୋଇ ବାବାଜୀ ପଦ୍ମଚରଣ ପ୍ରଥମେ ଏକ ନାଟକ ସାହିତ୍ୟର ସୃଷ୍ଟି କରିଥିଲେ ।

ପରବର୍ତ୍ତୀ ସମୟରେ ବାବାଜୀ ପଦ୍ମଚରଣଙ୍କ ରଚିତ ଅନ୍ୟ ଦୁଇଟି ନାଟକ ହେଉଛି ୧୯୩୧ ମସିହାରେ ପ୍ରକାଶିତ "କଂସବଧ" (ନାଟକ ଓ ଯାତ୍ରା) ଓ ୧୯୩୨ ମସିହାରେ ପ୍ରକାଶିତ "ଶ୍ରୀଶ୍ରୀ ରାଧାଗୋବିନ୍ଦ କେଳି ବିଳାସ" (ନାଟକ ଓ ଯାତ୍ରା) । କଂସବଧ ନାଟକର ଭୂମିକାରେ ବାବାଜୀ ପଦ୍ମଚରଣ ଲେଖିଛନ୍ତି ଯେ "ଉତ୍କଳ ଭ୍ରାତାମାନେ ଏହାକୁ ଆଦର ସହ ଗ୍ରହଣ

କଲେ, 'ଶ୍ରୀରାଧାଗୋବିନ୍ଦ କେଳି ରହସ୍ୟ', 'ଶ୍ରୀ ହରିଦାସ ଠାକୁର' ନାଟକମାନ ଛପାଇବି ।" ତାଙ୍କର ପରବର୍ତ୍ତୀ ନାଟକ ପ୍ରକାଶନ "ଶ୍ରୀଶ୍ରୀ ରାଧାଗୋବିନ୍ଦ କେଳି ବିଳାସ" । ଏହା 'ଶ୍ରୀ ରାଧାଗୋବିନ୍ଦ କେଳି ରହସ୍ୟ'ର ନାମାନ୍ତର ବୋଲି ମନେ ହୁଏ । କିନ୍ତୁ ଉପରୋକ୍ତ 'ଶ୍ରୀ ହରିଦାସ ଠାକୁର' ନାଟକ ବାବାଜୀ ପରବର୍ତ୍ତୀ ସମୟରେ ଛାପି ପ୍ରକାଶ କରି ନାହାନ୍ତି । କେଉଁ କାରଣରୁ ସେ ଏହାକୁ ଯେ ପ୍ରକାଶ କରି ପାରି ନାହାନ୍ତି ତାହା ଆଜି ଜାଣି-ବାର ଉପାୟ ନାହିଁ । ଉକ୍ତ ନାଟକର ପାଣ୍ଡୁଲିପି ମଧ୍ୟ ଆଜି ନିର୍ଦ୍ଦିଷ୍ଟ । ଯେତେତୁର ମନେ ହୁଏ ବାବାଜୀ ପଦ୍ମଚରଣ ୧୯୩୭ ମସିହାରେ ଶେଷ ଜୀବନ କଟାଇବା ପାଇଁ ଶ୍ରୀ ବୃନ୍ଦାବନଧାମକୁ ଯିବା ସମୟରେ ତାଙ୍କର ଗ୍ରନ୍ଥମାନ ସହ ଏହି ପାଣ୍ଡୁଲିପି ଖଣ୍ଡିକ ସଙ୍ଗରେ ନେଇଯାଇ ପାରିଥାନ୍ତି ଏବଂ ତାଙ୍କର ଦେହତ୍ୟାଗ ପରେ, ତାହା ଅବହେଳିତ ହୋଇ ନଷ୍ଟ ହୋଇ ଯାଇ ପାରିଥାଏ । ଏହା ତାଙ୍କ ରଚିତ 'ଠାକୁର ଶ୍ରୀ ହରିଦାସ' ପୁସ୍ତକ ନୁହେଁ କାରଣ ଏହା ୧୯୧୫ ମସିହାରେ ପ୍ରକାଶିତ ହୋଇଥିଲା ଏବଂ 'କଂସବଧ' ନାଟକର ଭୂମିକା ୧୯୩୦ ମସିହାରେ ଲିଖିତ ।

## ନାଟକରେ ସମାଜ—ସଂସ୍କାର ମନୋଭାବ

ମୌଳିକ ବିଷୟ ବସ୍ତୁକୁ କୌଣସି ପ୍ରକାରେ ବିକୃତ କିମ୍ବା ଅପ୍ରାସଙ୍ଗିକ ନ କରି 'କଂସବଧ ନାଟକ'ରେ ବାବାଜୀ ପଦ୍ମଚରଣ ସେ ସମୟରେ ଆମ ଦେଶରେ ଦେଖୁଥିବା ସହରଗୁଡିକର ବାତାବରଣକୁ ଯେପରି ନିଖୁଣ ଭାବରେ ଚିତ୍ରଣ କରିଛନ୍ତି ତାହା ତାଙ୍କର ସମାଜ ସଂସ୍କାର ମନୋଭାବ ତଥା ନାଟକ ରଚନାରେ ନୈପୁଣ୍ୟର ପରିଚୟ ଦିଏ ।

ମାମୁଁ କଂସ ରଜାଙ୍କର ନିମନ୍ତ୍ରଣ ପାଇ ଶ୍ରୀକୃଷ୍ଣ ବଳରାମ ବୃନ୍ଦାବନରୁ ଆସି ମଥୁରା ନଗରରେ ପହଞ୍ଚିଲେ । ସଙ୍ଗରେ ଥାନ୍ତି ସଖା ମଧୁମଙ୍ଗଳ । ରାଜପଥରେ ଚାଲୁ ଚାଲୁ ଦୁଇ ପାଖରେ ସହରର ଆସୁରିକ ତଥା ଜନମଙ୍ଗଳ-ବିରୋଧୀ ପରିବେଷ ଦେଖି ମଧୁମଙ୍ଗଳ ସଙ୍ଗୀତ ଆକାରରେ କୃଷ୍ଣ ବଳରାମଙ୍କୁ କହି ଚାଲିଛନ୍ତି—

॥ ୧୭ ॥

ଦେଖ ଦେଖରେ ଭାଇ
ଏ ସହର କେତେ ଶୋଭା ଦିଶଇ
ଦେଖରେ ଭାଇ ।

ଦେଖ ଦେଖ ହେ ସଖା
(ଆଜ) ବୃନ୍ଦାବନ ଗର୍ବ କର ନା ଲେଖା,
ଦେଖ ହେ ସଖା ।

ଆହୁରି ଦେଖ,
ନିରେଖି ନିରେଖି ଆହୁରି ଦେଖ,
ବୃନ୍ଦାବନ ଏହା ସଙ୍ଗେ ପରଖ ହେ,
ଆହୁରି ଦେଖ ।

ଥାକି ଥାକି ପୁରି ରହିଅଛି ଘେରି
ମଣ୍ଡା ଜିଲିପି ସନ୍ଦେଶ ।

ଦେଖିବା ଲୋକଙ୍କ ପାଟିରୁ ତ ଲାଳ
ବହି ପଡ଼େ ସର୍ବଶେଷ ।

ନାସା ଗନ୍ଧରେ ମାତେ
ପକ୍ୱ ହୋଇଛି ସେ ଘାସର ବୃତେ
ଜିଣିଛି ଅକ୍ଲେଶେ ସ୍ୱର୍ଗ ଅମୃତେ ହେ ।

ତା ପ ଖରେ ପୁଣି ସଜା ସାରି ସାରି
ଅପୂର୍ବ ପାନ ଦୋକାନ
କେ କିଣୁଛି ଗୋଟା, (କେବା) ଖିଲେ ଭରେ ବଟା

ପକାଇ ପଇସାମାନ
କେତେ ଝଣ ଝଣରେ
ଫିଙ୍ଗଇ ପଇସା ଝଣ ଝଣରେ ।
ପକେଟରୁ ଫିଙ୍ଗେ ଝଣ ଝଣରେ ।

କେହୁ ଅଣ୍ଡା ଭିତି    କିଣେ ଗୁଣ୍ଡ ବିଡ଼ି
ଦିଆସିଲି ଫଟ୍ ମାରେ
ମୁଖ ମଧ୍ୟେ ଦେଇ    ଗଣ୍ଠିରେ ଶୋଷଇ
ଟାଣେ କି ପ୍ରାଣ ଆତୁରେ
ଫକ ଫକରେ
ଧୂଆଁ ଗୁଡ଼ିଡ଼ିଏ ଫକ ଫକରେ
ଜଳୁଥାଏ ବିଡ଼ି ଜକଜକରେ ।

ତହିଁ ପାଶେ ଶୋଭେ    ଜନମନଲୋଭ
ଅପୂର୍ବ ଗୁହା ଦୋକାନ
ଚିନା ବାସନରେ    ଟେବୁଲ ସେ ଭରା
ଦିଶଇ କେତେ ଯତନ
ଦେଖିଥିଲ କି ଏହା
( ତୁମ୍ଭେ ) ବ୍ରଜପୁରେ ଦେଖିଥିଲ କି ଏହା
ଏ ଯେତେ ଦରବ, (ମୁଖେ) ନ ଯାଏ କୁହା ।

ଏଠାରେ କୁହିଁତ    ଜାତିଭେଦ ନାହିଁ
ସମସ୍ତେ ଏକ ସମାନ
ପିଆଲକୁ ନେଇ    ଓଠରେ ଲଗାଇ
ପିଅନ୍ତି ଚୁ ଚୁ କରିଣ
ହାଡ଼ି କି ଅବା ପାଣ
କି ବ୍ରାହ୍ମଣ କିବା ମୁସଲମାନ
ଏହିଠାରେ ଛଇ ସର୍ବେ ସମାନ ।

ନ ଥାଉ ପଛକେ    ଖାଇବାକୁ ଭତ
ଗୁହା ଖାଇବା ତ ମୂଳ
ମାଇପର ପଛେ    ବଳା ବିକା ହେଉ
ପେଟେ ପଡ଼ୁ ଗୁହା ଢୋଳ

॥ ୧୯ ॥

ଏଣେ ପେଟ ତ ଥଣ୍ଡା
ପିଲ ପଚ୍ଛେ ମାଲୁ ପାଟିରେ ବିଣ୍ଡା
ଘେକରେ ପଚ୍ଛେ ମରୁ ବାପ ହୁଣ୍ଡା ।

ଦେଖ ଦେଖ ଭଇ ଦେଖରେ କହ୍ନାଇ
ଦେଖ ସୁଦାମ ଅର୍ଜ୍ଜୁନ
ବୋତଲେ ବୋତଲେ ଶୋଭ ପାଉଅଛି
କି ଦିବ୍ୟ ମଦ ଦୋକାନ
ଭଇ ଅଛି କି କହ
ତୁମ୍ଭ ବ୍ରଜରେ ଏ ମାନ ଅଛି କି କହ
ଏ ଯେ ଶଜନଗର
କଂସ ରଜାର ପ୍ରଧାନ ସହର ।

ଗିଲସେ ଗିଲସେ ଦେଉଛନ୍ତି ଢ଼ାଳି
ପଳ ଗଳ କି ଟଳାଉଛେ
ନାଚୁଛନ୍ତି ପୁଣି ଆନନ୍ଦିତ ହୋଇ
ତୁଣ୍ଡେ ଉଚ୍ଚାରି ଶଳାରେ
ଦେଖ ଭଇକୁ ଡଇ
ଶଳା ଶଳା ବୋଲି ଗାଳି ଦିଅନ୍ତି
ଏକକୁ ଆରେକ ନିଏ କୁଣ୍ଢାଇ
ଯାଉଅଛି କେତେ ସୁଖ ଯେ ବହି ।

* * *

ବ୍ୟଙ୍ଗାତ୍ମକ ସାହିତ୍ୟ ସୃଷ୍ଟି କରିବାରେ ଯେ ବାବାଜୀ ପଦ୍ମଚରଣ ନିପୁଣ ଥିଲେ, ଉପରୋକ୍ତ କବିତାରୁ ଏହା ସ୍ପଷ୍ଟ ଜଣାପଡ଼େ ।

# ଛନ୍ଦ ସାହିତ୍ୟ ରଚନା - କୀର୍ତ୍ତନ

ବାବାଜୀ ପଦ୍ମଚରଣଙ୍କ କବି ପ୍ରତିଭାର ଅନ୍ୟ ଏକ ଦିଗ ହେଉଛି ଛନ୍ଦ ସାହିତ୍ୟ ରଚନା । ଓଡ଼ିଆ ଭାଷାରେ କୀର୍ତ୍ତନ ସଙ୍ଗୀତ ଲେଖି ପ୍ରକାଶ କରିବାରେ ସେ ପ୍ରଥମ ବୋଲି ୧୯୧୫ ମସିହାରେ ପ୍ରକାଶିତ ତାଙ୍କର ଓଡ଼ିଆ କୀର୍ତ୍ତନ ପୁସ୍ତକର ଭୂମିକାରୁ ଜଣାପଡ଼େ । ସେ ଲେଖିଛନ୍ତି—

" × × × ତେଣୁ ଆମ୍ଭ ଓଡ଼ିଶାରେ ମଧ୍ୟ କୀର୍ତ୍ତନ ବହୁଳ ପ୍ରଚାର ଥିଲା ଓ କ୍ରମେ ଚଳି ଆସୁଅଛି । କିନ୍ତୁ କି କାରଣରୁ କେଜାଣି, ବିଶୁଦ୍ଧ ଓଡ଼ିଆ ଭାଷାରେ ସେ କୀର୍ତ୍ତନ ପ୍ରଚଳିତ ନ ଥିଲା । ମୋର ମନରେ ମଧ୍ୟ ପୂର୍ବେ ଏ ଧାରଣା ଥିଲା ଆମ୍ଭ ଓଡ଼ିଆ ଭାଷା, କୀର୍ତ୍ତନ ପକ୍ଷରେ ଉପଯୋଗୀ ନୁହେଁ । ଆମ ଦେଶବାସୀଙ୍କ ମୁଖରେ ବଙ୍ଗଳା ଭାଷା ଭଲରୂପେ ଉଚ୍ଚାରିତ ନ ହେବାରୁ କୀର୍ତ୍ତନ ସାଧାରଣ ପକ୍ଷରେ ସୁଶ୍ରାବ୍ୟ ହେଉ ନଥିଲା । ତେବେ ଭକ୍ତମାନେ ଭାବ ଗ୍ରହଣ କରି ପ୍ରମତ୍ତ ହୁଅନ୍ତି । ଭାଷା ପ୍ରତି ସେମାନଙ୍କର ଲକ୍ଷ୍ୟ ନଥାଏ । କୌଣସିଠାରେ ଆମ୍ଭ ଓଡ଼ିଆ ଭାଷାରେ କୀର୍ତ୍ତନ ପଦଥାଇ-ପାରେ । କିନ୍ତୁ ତାହା ମୁଁ ଶୁଣି ପାରି ନାହିଁ । ବାବଜୀ ଶ୍ରୀଗୋପାଳ-ଚରଣ ଦାସ ଜଣେ ଓଡ଼ିଆ, କିନ୍ତୁ ବଙ୍ଗଦେଶରେ ଓ ବୃନ୍ଦାବନରେ ବାସ କରି ବଙ୍ଗଳା କୀର୍ତ୍ତନରେ ବ୍ୟୁତ୍ପତ୍ତି ଲାଭ କରିଅଛନ୍ତି । ଶ୍ରୀ ଗୋବିନ୍ଦଙ୍କ ଇଚ୍ଛାରୁ ସେ ଏଠାରେ ରହି କେତେକ ବାଳକଙ୍କୁ କୀର୍ତ୍ତନ ଶିକ୍ଷା ଦିଅନ୍ତେ ଆମ୍ଭ ନିଜ ଭାଷାରେ କୀର୍ତ୍ତନ ପଦ ରଚନା କରିବାକୁ ମୋର ଇଚ୍ଛାବଳିଲା । କେତେକ କୀର୍ତ୍ତନ ପଦ ରଚନା କରି ତାଙ୍କୁ ଗାଇବାକୁ ଅନୁରୋଧ କଲି । ସେ ଗାଇବାରୁ ଦେଖାଗଲା, ଆମ୍ଭ ଓଡ଼ିଆ ଭାଷାରେ କୀର୍ତ୍ତନ ପଦମାନ ଉତ୍ତମ ରୂପେ ଚଳିପାରିବ । ତେଣୁ କୀର୍ତ୍ତନବିଳାସୀ ଶ୍ରୀଗୌର ମହାପ୍ରଭୁଙ୍କ ଶ୍ରୀଚରଣକମଳ ସ୍ମରଣ କରି ଚଣ୍ଡୀଦାସ, ବିଦ୍ୟାପତି, ବାସୁଘୋଷ, ଗୋବିନ୍ଦ ଦାସ ପ୍ରଭୃତି ମହାଜନମାନଙ୍କ ପଦାଙ୍କ ଅନୁସରଣ ପୂର୍ବକ ଏହି ପଦମାନ ରଚନା କଲି । × × × ।"

ବାବାଜୀ ପଦ୍ମଚରଣଙ୍କର "ଓଡ଼ିଆ କୀର୍ତ୍ତନ" ଦୁଇ ଭାଗରେ ପ୍ରକାଶିତ । ପ୍ରଥମ ଭାଗଟି ପ୍ରକାଶ ପାଇଥିଲା ୧୯୧୫ ମସିହାରେ ।

ଏଥିରେ ପ୍ରେମର ବିଭିନ୍ନ ବିଭବ ଯଥା ପୂର୍ବରାଗ, ମାନ, ମିଳନାଦି ସୂଚକ ୧୩୫ ଗୋଟି କୀର୍ତ୍ତନ ପ୍ରକାଶ ପାଇଛି । ଏହି " ଓଡ଼ିଆ କୀର୍ତ୍ତନ "ର ଦ୍ୱିତୀୟ ଭାଗ ୧୯୧୭ ମସିହାରେ ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା । ଶ୍ରୀଜଗନ୍ନାଥଙ୍କର ସ୍ନାନ, ଗୁଣ୍ଡିଚା ଯାତ୍ରା, ଏବଂ ଶ୍ରୀରାମଚନ୍ଦ୍ର ପ୍ରଭୃତି ବିଭିନ୍ନ ଯାତ୍ରା ଉତ୍ସବ ସମ୍ବନ୍ଧୀୟ ୧୪୦ ଗୋଟି କୀର୍ତ୍ତନ ସଙ୍ଗୀତ ଏହି ଦ୍ୱିତୀୟ ଭାଗରେ ସ୍ଥାନ ପାଇଛି । ଏ ସମସ୍ତ ସଙ୍ଗୀତ କୀର୍ତ୍ତନ ଧାରାରେ ଅଳଙ୍କାର, ଆଖର, ପୟାର ଆଦି ସମନ୍ୱିତ । ସଙ୍ଗୀତଗୁଡ଼ିକର ରଚନା ଶୈଳୀ ବଙ୍ଗଳା କୀର୍ତ୍ତନ ସ୍ୱରରେ ଗାୟନ ଉପଯୋଗୀ । ପ୍ରତ୍ୟେକଟି ସଙ୍ଗୀତ ଶେଷ ପଦରେ ପଦ୍ମ " ନାମରେ ଭଣିତି କରଯାଇଛି ।

ଦିନ ଥିଲା ଯେତେବେଳେ ଆମ ଓଡ଼ିଶାର ପୁଣ୍ୟପଲ୍ଲୀରେ ଶ୍ରୀରାଧାକୃଷ୍ଣ ମନ୍ଦିରମାନଙ୍କରେ ପ୍ରତିଦିନ ସନ୍ଧ୍ୟାରେ ଏବଂ ଉତ୍ସବାଦିରେ ବାବାଜୀ-ପଦ୍ମଚରଣଙ୍କ ରଚିତ କୀର୍ତ୍ତନ ଗାନରେ ଗଗନ ପବନ ଝଙ୍କୃତ ହୋଇ ଉଠୁଥିଲା ଏବଂ ଜନଗଣଙ୍କୁ ଭଗବତ୍ ଭାବରେ ବିଭୋର କରିରଖୁଥିଲା । ଆଜି କାଳର କୁଟୀଳ ପ୍ରଭାବରେ ସେ ସମସ୍ତ ଇତିହାସର ବସ୍ତୁ ହୋଇ ଯାଇଛି ।

* * *

# ଓଡ଼ିଶୀ ସଂଗୀତ ରଚନା

ବାବାଜୀ ପଦ୍ମଚରଣଙ୍କ କୃତ "ଓଡ଼ିଆ କୀର୍ତ୍ତନ" ପୁସ୍ତକ ସେତେବେଳେ ଉତ୍କଳର ମନ୍ଦିରମାନଙ୍କରେ କୀର୍ତ୍ତନ ଅଭାବ ମେଣ୍ଟାଇ ପାରିଥିଲା ସତ କିନ୍ତୁ ଉତ୍କଳୀୟ ମାନଙ୍କର ପାରମ୍ପରିକ ସଂସ୍କୃତି ଓଡ଼ିଶୀ ସଂଗୀତର ଆବଶ୍ୟକତା ପୂରଣ କରି ପାରିଲା ନାହିଁ। ସେତେବେଳେ ଦୋଳ, ଚନ୍ଦନ, ଝୁଲଣ, ରାସ ଆଦି ଉତ୍ସବରେ ଗୋଟିପୁଅ ଦଳ କବିସୂର୍ଯ୍ୟ, ଗୋପାଳକୃଷ୍ଣ ଏବଂ ବନମାଳୀଙ୍କ ରଚିତ ଓଡ଼ିଶୀ ସଙ୍ଗୀତ ଗାନ କରି ଉତ୍ସବକୁ ସରସ ଓ ମନୋମୁଗ୍ଧକର କରଉଥିଲେ। ଉକ୍ତ ସଙ୍ଗୀତମାନ ଶ୍ରୀ ରାଧାକୃଷ୍ଣଲୀଳା ସମ୍ବନ୍ଧିତ ହେଲେ ମଧ୍ୟ ବିଭିନ୍ନ ଉତ୍ସବ ଉପଯୋଗୀ ହୋଇ ନ ଥିବାରୁ ବାବାଜୀ ପଦ୍ମଚରଣ ବିଭିନ୍ନ ଯାତ୍ରା ଉପଯୋଗୀ ଲୀଳା ସଂଗୀତମାନ ଓଡ଼ିଶୀ ରାଗରାଗିଣୀ ଛନ୍ଦରେ ରଚନା କରି "ସଂଗୀତ ହାରାବଳି" ନାମ ଦେଇ ପ୍ରକାଶ କଲେ।

ଏହି "ସଂଗୀତ ହାରାବଳି" ପୁସ୍ତକ ଦୁଇ ହାର ଭାଗରେ ପ୍ରକାଶିତ। ପ୍ରଥମ ହାରଟିକୁ ସେ ତାଙ୍କର ଦୀକ୍ଷାଗୁରୁ ବାବାଜୀ ଶ୍ରୀଭଗବାନ ଦାସଙ୍କ ନିର୍ଦ୍ଦେଶରେ ଶ୍ରୀକୃଷ୍ଣଙ୍କର ଅଷ୍ଟକାଳ ଲୀଳାକୁ ଅବଲମ୍ବନ କରି ରଚନା କରିଥିଲେ ବୋଲି ଉକ୍ତ ପୁସ୍ତକର ଦ୍ୱିତୀୟ ହାର ଉତ୍ସର୍ଗ ପତ୍ରରେ ନିମ୍ନ ମତେ ଲେଖିଛନ୍ତି।

× × × × × × ×

"ହେଲେହେଁ ମୁଁ ଗୁଣହୀନ ଅତି ମୂଢ଼ମତି
ସ୍ନେହବଶେ ଦୋଷ ଲେଶ ମୋହର ନଦେଖି
ନିଯୋଜିଲ ଗୁରୁକାର୍ଯ୍ୟେ ଗୁରୁଭାର ଦେଇ
ଧାଡ଼ିକ୍ରମେ ଯୋଖିବାକୁ ରସର ସଙ୍ଗୀତ
ରାଧାକୃଷ୍ଣ ପ୍ରେମଲୀଳା ଅମୂଲ୍ୟ ସମ୍ପତ୍ତି

× × × × × × ×

" ଭବଦୀୟ କୃପାବଳେ କରି ଦୁଃସାହସ
ଶ୍ରୀଗୁରୁ ପଦକମଳ ହୃଦୟରେ ଧରି
ବସାଇଲି ଧାଡ଼ିକ୍ରମେ କେତେ ପଦମାନ
କୃଷ୍ଣ ଅଷ୍ଟକାଳ ଲୀଳା ପ୍ରଥମ ହାରରେ
ଏବେ ପୁଣି ଗୁନ୍ଥିଅଛି ଏ ଦ୍ୱିତୀୟ ହାର
ରାଧାକୃଷ୍ଣ ଯାତ୍ରାମାନ ସନ୍ନିବେଶ କରି "

× × × × × × ×

ଉକ୍ତ ପୁସ୍ତକର ଦ୍ୱିତୀୟ ହାରରେ ରାଧାକୃଷ୍ଣଙ୍କର ବିଭିନ୍ନ ଯାତ୍ରା ସମ୍ବନ୍ଧିତ ସଂଗୀତମାନ ପ୍ରକାଶିତ । ଏହି ପୁସ୍ତକର ଭୂମିକାରେ ବାବାଜୀ ଲେଖିଛନ୍ତି —

" ଚନ୍ଦନ, ଝୁଲଣ, ରାସ, ଦୋଳ ପ୍ରଭୃତି କୃଷ୍ଣ ଯାତ୍ରାମାନଙ୍କରେ ଶ୍ରୀବିଗ୍ରହଙ୍କ ସମ୍ମୁଖରେ ସଚରାଚର ସଂଗୀତ ହୋଇଥାଏ । କିନ୍ତୁ ପ୍ରତି ଯାତ୍ରା ଉପଯୋଗୀ ସଙ୍ଗୀତର ଅଭାବରୁ ନାଟୁଆମାନେ ଅପରପର ରସ ସଂଗୀତ ଗାଉଥାଆନ୍ତି । ରସିକ ଭକ୍ତମାନଙ୍କୁ ସମୟୋଚିତ ନ ହେବାରୁ ତାହା ତେତେ ପ୍ରୀତିକର ହୁଏନାହିଁ । ଅଭାବବଶତଃ ସେହି ଗୀତହିଁ ଶୁଣନ୍ତି ।

ମୁଁ ଅଯୋଗ୍ୟ ହୋଇ ମଧ୍ୟ ରସିକ ଭକ୍ତମାନଙ୍କ ପଦଧୂଳି ଶିରରେ ଧରି ସାହସ ପୂର୍ବକ କୃଷ୍ଣଯାତ୍ରା ସମ୍ବନ୍ଧରେ ଏହି କେତେକ ଗୀତ ରଚନା କରି ମୁଦ୍ରାଙ୍କନ କଲି । ରସିକ ଭକ୍ତଗଣ ଆଦର ସହ ଗ୍ରହଣ କଲେ ଶ୍ରମ ସଫଳ ମଣିବି । "

ଏହି ସଂଗୀତମାନ ରଚନା କରି ପ୍ରକାଶ କରିବା ଏବଂ ସେ ସମସ୍ତ ଓଡ଼ିଶୀ ରାଗରାଗିଣୀ ଛନ୍ଦରେ ରଚିତ ହୋଇଥିବାରୁ ବାବାଜୀ ପଦ୍ମଚରଣ ଉତ୍କଳୀୟ ରସିକ ଭକ୍ତମାନଙ୍କର ଏ ଦିଗରେ ଏକ ବଡ଼ ଅଭାବ ପୂରଣ କରିପାରିଥିଲେ । ବାବାଜୀଙ୍କ ରଚିତ ଏହି ସଂଗୀତମାନ କେବଳ ଯେ

ଭବଭକ୍ତିମୂଳକ ଏପରି ନୁହେଁ, ଏଥିରେ ସନ୍ନିବେଶିତ ବିଭିନ୍ନ ଋତୁର ବର୍ଣ୍ଣନା ସାହିତ୍ୟକ ଦୃଷ୍ଟିକୋଣରୁ ଯେତି ସାବଲୀଳ ଓ ଭବବ୍ୟଞ୍ଜକ ମଧ୍ୟ ।

## ସାହିତ୍ୟରେ ପ୍ରକୃତି ଚିତ୍ରଣ

ପ୍ରକୃତି ଚିତ୍ରଣରେ ଯେ ବାବାଜୀ ପଦ୍ମଚରଣ ପାରଙ୍ଗମ ଥିଲେ ତାହା ତାଙ୍କ ରଚିତ କୀର୍ତ୍ତନ ସଂଗୀତମାନ ଅନୁଧ୍ୟାନ କଲେ ସ୍ପଷ୍ଟ ଜଣା ପଡ଼େ ।

"ସଂଗୀତ ଭାଗବତି" ପୁସ୍ତକର ଚନ୍ଦନଯାତ୍ରା ସଂଗୀତରେ ଗ୍ରୀଷ୍ମଋତୁର ବର୍ଣ୍ଣନା କରି ସେ ଲେଖିଛନ୍ତି—

ଦିବାକର ତାପ ହୋଇଲା ଅମାପ
          ଜାଳିଦେଲା ଅଙ୍ଗ ପ୍ରାଣ ସହିତେ
ଅଙ୍ଗର ଭୂଷଣ ହୋଇଲା ଦୂଷଣ
          ନ ରୁଚିଲା କାହିଁ ମନ କିଞ୍ଚିତେ ।

ଅନ୍ୟତ୍ର—

ଖର ଅତି ପ୍ରଖର ହୁଅନ୍ତେ ଯେ
          ମୋହନ ସୁବନ୍ଧେ ଗଲେ
ଯମୁନାର କୂଳ ହୋଇବ ଶୀତଳ
          ଚାଲ ଏବେ ଯିବା ଭାଇ ।

ନାହିବା କୂଳେ ପହଁରିବା ଜଳେ
          ଖେଳିବା ନଉକା ନେଇ
କରିବା ସେବନ ଶୀତଳ ପବନ
          ଚନ୍ଦନ ଅଙ୍ଗେ ଲଗାଇ ।

ତୋଳିବା କମଳ ଫୁଲ୍ଲି ଗୁଲୁମାଳ
          ପିନ୍ଧିବା ଅଙ୍ଗେ ସଜାଇ
ବିହଙ୍ଗମ ସ୍ୱନ ଭ୍ରମର ଗୁଞ୍ଜନ
          ଦେବ ପ୍ରୀତି ଉପୁଜାଇ ।

ଝୁଲଣ ଯାତ୍ରା ସଙ୍ଗୀତରେ ବର୍ଷା ଋତୁର ବର୍ଣ୍ଣନା କରି ସେ ଲେଖିଛନ୍ତି—

ଝର ଝର ବରଷେ ବରଷା
ମାରେ ଘଡ଼ ଘଡ଼ି ଘଡ଼ି ଘଡ଼ି କି
କଳ କଳ ରବେ ପାଣି ବହିଯାଏ
ଝଲକେ ସୌଦାମିନୀ ମେଘେ ଝଟକି ।

ଘନ ଗର୍ଜନ ଭୟେ ଘରୁ ଜନ
ନୁହନ୍ତି ବାହାର ଆଉ କେଣିକି ।

ଅନ୍ୟତ୍ର—

କେଡ଼େ ଶୋଭା ସୁରଧୁନୀ ତଟେ ଗୋ,
ସେ ପ୍ରାବୃତଟ
ମାଳତୀ କୁସୁମେ ହିନ୍ଦୋଳା ମଣ୍ଡିତ
ମାଳତୀର ମାଳା ଗଳାରେ ଲମ୍ବିତ

ମାଳତୀର ଗନ୍ଧେ ହୋଇ ପ୍ରଲୋଭିତ
ଭ୍ରମର ଧାଏଁ ଉଛାଟେ ଗୋ ।

ବହେ ମନ୍ଦାକିନୀ କଲ୍ଲ କଲ୍ଲ ଝରି
ଝର ଝର କରି ବରଷଇ ବାରି
ଖେଳଇ ଚପଳା ଆଲୋକିତ କରି
କାଦମ୍ବିନୀ ହୃଦ ତଟେ ଗୋ ॥

ଶରତରସ ସଙ୍ଗୀତରେ ଶରତ ଋତୁର ବର୍ଣ୍ଣନା କରି ସେ ଲେଖିଛନ୍ତି—

ମନ୍ଦ ମନ୍ଦ ବହେ ଶୀତ ଗନ୍ଧବହ
ଚୁମ୍ବି କାଳିନ୍ଦୀ ସଲିଳ
ଶଶୀ କିରଣରେ ଶୋଭିତ କୁମୁଦ
ପ୍ରମୋଦେ କରଇ ଖେଳ ।

ଦୋଳଯାତ୍ରା ସଙ୍ଗୀତରେ ଋତୁରାଜ ବସନ୍ତ ଋତୁ ବର୍ଣ୍ଣନାରେ ସେ ଲେଖୁଛନ୍ତି —

ଅନ'ଲେ ମିତ ସୁନ୍ଦର ଋତୁରାଜକୁ
ବିଜେ ସହଚର ସଙ୍ଗେ ପିନ୍ଧି ଉତ୍ସବ ସଜକୁ ॥
ଭ୍ରମରଗଣ ଡଗର ଭ୍ରମନ୍ତି ଆଗ ଆଗର
ଗୁଣ୍ଟ ଗୁଣ୍ଟ ଗୁଣ୍ଟ ସ୍ୱର ଶୀତ-ଗର୍ବ ତରଜକୁ ॥
ରଣ ମହୁରି କୋକିଳ ବାଏ ଅତି ସୁମଞ୍ଜୁଳ
ମତାଏ କାମିନୀକୁଳ ବଢାଇ କାମ-ଗଞ୍ଜକୁ ॥
ନବୀନ ପଲ୍ଲବାବଳୀ ସୁରଙ୍ଗେ ଆସେ କଅଁଳି
ଉଡ଼େ ନିକେତନ ଝଳି ମଣ୍ଡି ମଣ୍ଡପରାଜକୁ ॥
ମାଧବୀ, ମଧୁମାଳତୀ, କେତକୀ, ଅଶୋକ, ଯାତି
ବଢାଏ ନୟନ ପ୍ରୀତି ବିସ୍ତାରି ଶୋଭା ପୁଞ୍ଜକୁ ॥

* * *

## ଅମିତ୍ରାକ୍ଷର ଛନ୍ଦ ରଚନା

ବାବାଜୀ ପଦ୍ମଚରଣଙ୍କ ରଚିତ ଛନ୍ଦ-ସାହିତ୍ୟ କ୍ଷେତ୍ରରେ ଅମିତ୍ରାକ୍ଷର ଛନ୍ଦର ସ୍ଥାନ କିଛି ଊଣା ନୁହେଁ । ବାବାଜୀଙ୍କ ଜନ୍ମସ୍ଥାନରୁ ପ୍ରାୟ ଏକ କ୍ରୋଶ ଦୂରରେ କବିବର ରାଧାନାଥ ରାୟଙ୍କ ଜନ୍ମସ୍ଥାନ କେଦାରପୁର ଗ୍ରାମ ଅବସ୍ଥିତ । କବିବର ସେତେବେଳେ ଓଡିଶାର ସ୍କୁଲ ବିଭାଗୀୟ ଇନ୍‌ସପେକ୍ଟର ଥାନ୍ତି । ତାଙ୍କରି ଚେଷ୍ଟାରେ ପଦ୍ମଚରଣ ପୂର୍ବାଶ୍ରମରେ କଟକ ପ୍ୟାରୀମୋହନ ଏକାଡେମୀ ସ୍କୁଲର ସହକାରୀ ଶିକ୍ଷକ ଓ ଢେଙ୍କାନାଳ ଉଚ୍ଚ ଇଂରଜୀ ବିଦ୍ୟାଳୟରେ ସହକାରୀ ପ୍ରଧାନ ଶିକ୍ଷକ ହୋଇଥିଲେ । ତେଣୁ ଯେତେଦୂର ମନେହୁଏ, ଅମିତ୍ରାକ୍ଷର ଛନ୍ଦରେ ସାହିତ୍ୟ ସୃଷ୍ଟି କରିବା ପାଇଁ ବାବାଜୀ ପଦ୍ମଚରଣ କବିବରଙ୍କୁ ଅନୁସରଣ କରିଥିଲେ ।

ଅମିତ୍ରାକ୍ଷର ଛନ୍ଦରେ ତାଙ୍କର କୌଣସି ରଚନା ପୂର୍ଣ୍ଣାଙ୍ଗ ପୁସ୍ତକ ଭାବରେ ପ୍ରକାଶ ପାଇ ନ ଥିଲେ ହେଁ, ତାଙ୍କ ରଚିତ କେତେକ ଗୁଡିଏ ପୁସ୍ତକର ଉତ୍ସର୍ଗ ପତ୍ର ଅମିତ୍ରାକ୍ଷର ଛନ୍ଦରେ ଲିଖିତ । ସେ ସମସ୍ତ ଅନୁଧ୍ୟାନ କଲେ

ଏ ପ୍ରକାର ଛନ୍ଦରେ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ତାଙ୍କର ପାର-ଦର୍ଶିତା ଜଣା ପଡ଼େ ।

"ଭକ୍ତିବେଥା" ଗ୍ରନ୍ଥକୁ ତାଙ୍କର କୁଳଦେବତା ଶ୍ରୀଗୋବିନ୍ଦ ଜିଉଙ୍କ ଶ୍ରୀଚରଣକମଳରେ ଉତ୍ସର୍ଗ କରି ସେ ଲେଖିଛନ୍ତି—

× × × ×

ଜାଣିଲି ଦୃଢରେ କଲେ ଗୋବିନ୍ଦ ଭାବନା
ନ ଆସି ପାରେ ବିପଦ କାହାରି ସୀମାକୁ
ହୋଇ ସେ ବିଶ୍ୱାସେ ବଳୀ କଲି ମୁଁ ସାହସ,
ମୃଗ ହୋଇ ବ୍ୟାଘ୍ର ମୁଖୁ ଟାଣିବାକୁ ଗ୍ରାସ ,
କ୍ରୋଧାନ୍ଧ ଗୋଖୁର ଶିରେ ନଦିବାକୁ ପାଦ ।
ପୁତ୍ରଶୋକ ପତ୍ନୀଶୋକ ତୋ କୃପାବଳରେ
ପାରିଲେ ନାହିଁ ଏ ଦାସେ ଅଭିଭୂତ କରି ।

× × × × × × ×

ଗାଅନ୍ତା କଉମାଛକୁ ଛାଡ଼ନ୍ତୁ କି ପାଇଁ
ତଳେ କରେଇ ଉପରେ ତଳେ ଜାଳ ଜାଳି
ଦେଖି ତାର ଛଟପଟ ଲାଗୁଛି କି ସୁଖ ?
ଏଡ଼େ ନିଷ୍ଠୁର କେସନେ ହେଲୁ ପଦ୍ମମୁଖ ?

× × × × × × ×

ନାକରେ ଡୋରି ଲଗାଇ ଭଲୁ ପରି କରି
ଲୋକ ଆଗେ ନଚାଉଛୁ କେଉଁ ଶାଢୀ ପାଇଁ ?

× × × × × × ×

ହେଲେହେଁ ବାହ୍ୟେ ନିଷ୍ଠୁର ଅଛି ଦୟାନ୍ତରେ
ଏହି ମନେ କରି ଆଜି ଅର୍ପୁଛି ଏ ଗ୍ରନ୍ଥ

ତୋ ପଦକମଳେ ଘେନ ଘେନରେ ଗୋବିନ୍ଦ ।
ଦିଅ ନା ଭକ୍ତିଚରିତ ଘୃଣାରେ ପକାଇ ।
କଣ୍ଟା ବଣରେ ପଡ଼ିଲେ ତୁଳସୀ ପତର
ନୁହଇ କି ପଦ ଯୋଗ୍ୟ ତୋର ପ୍ରାଣ 'ଣି ?
ଗୋରଚନା ଆଣି ଦେଲେ ଅସ୍ପୃଶ୍ୟ ଚଣ୍ଡାଳ
ତାକୁ ନେଇ ଘଲେ ତୁହି ନ ଘେନୁ କି ଚିତା ? "

ଓଡ଼ିଆ କୀର୍ତ୍ତନ " ପୁସ୍ତକ ବାବାଜୀ ପଦ୍ମଚରଣ ଢେଙ୍କାନାଳର ରାଜମହିଷୀ ଶ୍ରୀମତୀ କୃଷ୍ଣପ୍ରିୟା ଦେବୀଙ୍କୁ ଉତ୍ସର୍ଗ କରି ଲେଖିଛନ୍ତି—

" ନୁହନ୍ତି ସବୁ ଧନିଏ ପ୍ରେମରୁ ବଞ୍ଚିତ
ଐଶ୍ୱର୍ଯ୍ୟ ପର୍ବତ ପଛେ ଉହାଡ଼ରେ ରହି
ଝରିଆସେ ବେଳେ ବେଳେ ପଥରରେ ଗଳି
ନିର୍ମଳ ଝରଣା, ତୃପ୍ତ କରେ ସର୍ବପ୍ରାଣୀ । "

" ଠାକୁର ଶ୍ରୀହରିଦାସ ଗ୍ରନ୍ଥକୁ ଶ୍ରୀଯୁକ୍ତ ଶ୍ରୀଶ୍ରୀ ରାଧାରମଣ ଚରଣ ଦାସ ବାବାଜୀଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରି ସେ ଲେଖିଛନ୍ତି—

" ବାଳକ ଯଦି ଅରପେ ଖେଳାର ପୁତଳୀ
ନିଏ ପିତା ପୁତ୍ର କରୁ ପ୍ରୀତି ସହକାରେ
ତଥା କର ଅଙ୍ଗୀକାର ହୋଇ ସ୍ନେହ ବଶ ,
ଥରେ କଉତୁକେ ଏଥି କଲେ ଦୃଷ୍ଟିପାତ
ଅପାର ପ୍ରୀତି ଲଭିବ ଏ ବାଳ ତୁମର । "

" ପ୍ରଭୁ ଶ୍ୟାମାନନ୍ଦ " ଗ୍ରନ୍ଥଟିକୁ ବାବାଜୀ ତାଙ୍କର ପରଲୋକଗତା ସହଧର୍ମିଣୀଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରି ଲେଖିଛନ୍ତି—

" ଯେତେବେଳେ ଠାକୁରାଣୀ ଅଷ୍ଟସଖୀ ମେଳେ
ମଧୁର ମଞ୍ଜରୀଗଣେ ହୋଇ ସୁବେଷ୍ଟିତା

କରମ୍‌ବେ ମନ ସୁଖେ ମଧୁର ଆଳାପ
ଶୁଣାଅ ତାହାଙ୍କୁ ଥରେ ଏ ମୋର ରଚିତ
ଶ୍ରୀକନକମଞ୍ଜରୀଙ୍କ ମଧୁର ଚରିତ ।
ପ୍ରିୟଦାସୀ ଗୁଣାବଳୀ ଶୁଣି ଠାକୁରଣୀ
ଲଭିଲେ ଆନନ୍ଦ, ହେବ ସାର୍ଥକ ଏ ଲେଖା ।
କହୁଛି ସଙ୍ଗିନୀ, ତେଣୁ ତୁମ୍ଭଙ୍କୁ ବରଣ
ଏହି ଗୁରୁତର କାର୍ଯ୍ୟେ, ଅର୍ପି ତୁମ୍ଭ କରେ
ଏ ଶ୍ୟାମାନନ୍ଦ ଚରିତ ଉତ୍କଳ ଭାଷାରେ । ''

ନିଜର ଭାବକୁ ସରଳ, ସରସ ଓ ହୃଦୟଗ୍ରାହ୍ୟ ଭାବରେ ଆଳଙ୍କାରିକ ସାହିତ୍ୟ ମାଧ୍ୟମରେ ରୂପାୟନ କରିବାରେ ବାବାଜୀ ପଦ୍ମଚରଣ ଯେ ପାରଦର୍ଶୀ ଥିଲେ, ତାହା ତାଙ୍କ ରଚନା ମଧ୍ୟରୁ ଉପର କେତୋଟି ଉଦ୍ଧୃତିରୁ ସ୍ପଷ୍ଟ ଜଣାପଡ଼େ ।



# ଜୀବନ ଚରିତ – ଶ୍ରୀକୃଷ୍ଣ

ଛନ୍ଦ ସାହିତ୍ୟ ରଚନାରେ ବାବାଜୀ ପଦ୍ମଚରଣ ଯେପରି ପ୍ରତିଭସମ୍ପନ୍ନ ଥିଲେ, ଗଦ୍ୟ ସାହିତ୍ୟ ରଚନାରେ ତାଙ୍କର ଉତ୍କଳ ସାହିତ୍ୟକୁ ଅବଦାନ ତତୋଧିକ ମହତ୍ୱପୂର୍ଣ୍ଣ । ତାଙ୍କ ଦ୍ୱାରା ରଚିତ ଆଠ ଖଣ୍ଡ ଗଦ୍ୟାତ୍ମକ ପୁସ୍ତକ ମଧ୍ୟରୁ ସାତଖଣ୍ଡ ମହାପୁରୁଷ ମାନଙ୍କର ଜୀବନଚରିତ ଉପରେ ଆଧାରିତ – ଯଥା 'ଶ୍ରୀକୃଷ୍ଣ', 'ଶ୍ରୀ ଗୌରାଙ୍ଗ', 'ଉତ୍କଳେ ଶ୍ରୀକୃଷ୍ଣଚୈତନ୍ୟ', 'ଠାକୁର ଶ୍ରୀ ହରିଦାସ', 'ଶ୍ରୀରାୟ ରାମାନନ୍ଦ', 'ପ୍ରଭୁ ଶ୍ୟାମାନନ୍ଦ' ଓ 'ପ୍ରଭୁ ରସିକାନନ୍ଦ ଦେବ' । ଅଷ୍ଟମ ପୁସ୍ତକଟି 'ଭକ୍ତିକଥା'- ଭକ୍ତିମାର୍ଗର ଏକ ଅନବଦ୍ୟ ସାଧନ ଗ୍ରନ୍ଥ ।

ଉପରେ ଶ୍ରୀକୃଷ୍ଣଙ୍କୁ ମହାପୁରୁଷ କହିବାରେ ତାଙ୍କର ଅମର୍ଯ୍ୟାଦା ହେଉ । କାରଣ ସେ ହେଉଛନ୍ତି ପୁରୁଷୋତ୍ତମ । ଶ୍ରୀମଦ୍‌ଭଗବତରେ ଶ୍ରୀକୃଷ୍ଣଙ୍କୁ ସ୍ୱୟଂ ଭଗବାନ ବୋଲି ଘୋଷଣା କରଯାଇଅଛି । ଜୀବ ସେହି ଶ୍ରୀକୃଷ୍ଣଙ୍କର ନିତ୍ୟ ଦାସ । ବାବାଜୀ ପଦ୍ମଚରଣ 'ଶ୍ରୀକୃଷ୍ଣ' ପୁସ୍ତକରେ ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କର ଜୀବନଚରିତ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ କିଶୋର ଛାତ୍ରମାନଙ୍କର ବୁଝିବା ଭଳି ଭଷାରେ ବର୍ଣ୍ଣନା କରିଛନ୍ତି । ଶିଷ୍ୟଙ୍କ ପ୍ରଶ୍ନରେ ଗୁରୁଦେବ-ଙ୍କର ଶ୍ରୀକୃଷ୍ଣଲୀଳାଚରିତ କଥନ ଏହି ପୁସ୍ତକର ମୁଖବନ୍ଧ । ଉକ୍ତ ପୁସ୍ତକରେ ଶ୍ରୀକୃଷ୍ଣଙ୍କର ସମସ୍ତ ଲୀଳା ବର୍ଣ୍ଣନା କରଯାଇଥିଲେ ହେଁ ତାଙ୍କର ସର୍ବଶ୍ରେଷ୍ଠ ଲୀଳା–ରାସଲୀଳା ବର୍ଣ୍ଣନା କରଯାଇ ନାହିଁ । ତାହାର କାରଣ ସ୍ୱରୂପ ବାବାଜୀ ପଦ୍ମଚରଣ ଶିଷ୍ୟଙ୍କ ପ୍ରଶ୍ନରେ ଗୁରୁଙ୍କ ମୁଖରେ ନିମ୍ନମତେ ପ୍ରକାଶ କରିଛନ୍ତି—

"ଶ୍ରୀକୃଷ୍ଣଙ୍କ ଲୀଳା ଅତି ଗୂଢ଼ । ତେବେ ସାମାନ୍ୟରେ ତୁମ୍ଭ ବୁଝିବା ଭଳି କିଛି କହୁଅଛି । ସେଥି ମଧ୍ୟରେ ଶ୍ରୀକୃଷ୍ଣଙ୍କର ଗୋପୀମାନଙ୍କ ସହିତ ଯେ ରାସଲୀଳା, ତାହା ଅତିବ ଗୂଢ଼ । ସେଥିରେ ମୋର ମଧ୍ୟ ଭଲ ପ୍ରବେଶ ନାହିଁ । ଅତଏବ ବର୍ତ୍ତମାନ ସେ ରାସାଦିଲୀଳା ଛାଡ଼ି ଆଉ ସମସ୍ତ

କିଛି କହିବି । ତୁମେ ବଡ଼ ହେଲେ ଓ ଶ୍ରୀକୃଷ୍ଣ କୃପା କଲେ ତୁମେ ସେ ସମସ୍ତ ଗୂଢ଼ ଲୀଳା ବୁଝି ପାରିବ । ତେବେ ଏତିକି କହୁଅଛି—ସେହି ରାସାଦିଲୀଳାହିଁ ଶ୍ରୀକୃଷ୍ଣଲୀଳାର ଉତ୍କୃଷ୍ଟତମ ଅଂଶ । ତାହା ବ୍ରହ୍ମାଦିଙ୍କୁ ଅଗୋଚର ।”

ଏ ପ୍ରକାର ଉକ୍ତି ବୈଷ୍ଣବ–ଜନୋଚିତ । ଶ୍ରୀକୃଷ୍ଣଙ୍କ ରାସଲୀଳା ଏପରି ଗୂଢ଼ ଯେ ସାଧାରଣ ପାଠକ ତ ଦୂରର କଥା, ବାବାଜୀ ପଦ୍ମଚରଣଙ୍କ ଭଳି ଜଣେ ଉଚ୍ଚ ଶିକ୍ଷିତ ପରମ ବୈଷ୍ଣବ ମଧ୍ୟ ଉପରୋକ୍ତ ଲେଖାରେ ସ୍ୱୀକାର କରିଛନ୍ତି ଯେ ତାଙ୍କର ଉକ୍ତ ବିଷୟରେ ଜ୍ଞାନ ପ୍ରବେଶ ନାହିଁ । ବାବାଜୀ ପୁସ୍ତକଟିର ଶେଷ ପୃଷ୍ଠାରେ ପୁଣି ଥରେ ପ୍ରକାଶ କରିଛନ୍ତି ଯେ ଶ୍ରୀକୃଷ୍ଣଲୀଳା ଓ ଶ୍ରୀକୃଷ୍ଣତତ୍ତ୍ୱ ବହୁ ବୁଦ୍ଧି ବଳରେ ମଧ୍ୟ ସମ୍ୟକ୍ ବୁଝିହୁଏ ନାହିଁ । ପରମଭାଗବତ ଟୀକାକାରମାନଙ୍କ “କୃପାରୁ କ୍ରମେ କେହି କେହି ସେ ତତ୍ତ୍ୱ ବୁଝୁଅଛନ୍ତି, କିନ୍ତୁ ତାହା ଜନସାଧାରଣଙ୍କର ବୁଝିବାର ବିଷୟ ନୁହେଁ । ମୁଁ ତୁମ୍ଭକୁ କହି ଯାଉଅଛି ସତ୍ୟ, କିନ୍ତୁ ଶ୍ରୀକୃଷ୍ଣଲୀଳାର ବିନ୍ଦୁବିସର୍ଗ ମୋତେ ଅଜଣା ।”

‘ରସୋ ବୈ ସଃ—’(ଶ୍ରୁତି)+ ସେ ଅର୍ଥାତ୍ ଶ୍ରୀକୃଷ୍ଣ ହେଉଛନ୍ତି ରସ । ତେଣୁ ତାଙ୍କ ନାମ ରସଶେଖର । ରସ ଆକାର ପ୍ରାପ୍ତ ହେଲେ ରାସ ନାମରେ ଅଭିହିତ ହୁଏ । ସେହି କାରଣରୁ ରାସଲୀଳା ପ୍ରକାଶ୍ୟ ନୁହେଁ— ଆସ୍ୱାଦ୍ୟ । ବୈଷ୍ଣବ ଧର୍ମର ମୌଳିକ ନୀତି ହେଉଛି— ‘ବହିରଙ୍ଗ ସଙ୍ଗେ କର ନାମ ସଂକୀର୍ତ୍ତନ, ଅନ୍ତରଙ୍ଗ ସଙ୍ଗେ କର ରସ ଆସ୍ୱାଦନ ।’ ରାସାଦି ଶ୍ରୀକୃଷ୍ଣଙ୍କର ଗୂଢ଼ ଲୀଳା କେବଳ ମାତ୍ର ଅନ୍ତରଙ୍ଗ ଭକ୍ତମାନଙ୍କ ସହିତ ଆସ୍ୱାଦନ କରିବାର କଥା । ଉପରୋକ୍ତ ପୁସ୍ତକ ଯେତେବେଳେ ସର୍ବସାଧାରଣଙ୍କ ଦ୍ୱାରା ବିଶେଷ କରି କୋମଳମତି ଛାତ୍ରମାନଙ୍କଦ୍ୱାରା ପଠିତ ହେବ, ସେତେବେଳେ ବାବାଜୀ ପଦ୍ମଚରଣଙ୍କ ଭଳି ଜଣେ ଉଚ୍ଚକୋଟୀର ବୈଷ୍ଣବ ମହାଜନ ଉକ୍ତ “ ଶ୍ରୀକୃଷ୍ଣ ” ପୁସ୍ତକରେ ରାସଲୀଳା ଭଳି ଗୂଢ଼ତତ୍ତ୍ୱ ପ୍ରକାଶ କରିଥାନ୍ତେ କିପରି ?

ଇତ୍ୟାଦି ଲୀଳା ଛାଡ଼ି ଦେଲେ ଉପରୋକ୍ତ ପୁସ୍ତକରେ ଭଗବାନ ଶ୍ରୀକୃଷ୍ଣଙ୍କ ଅନ୍ୟାନ୍ୟ ଚରିତ ସମସ୍ତଙ୍କର ବୁଝିବା ଭଳି ଏବଂ ସ୍ମରଣ ରଖି ପାରିବା ଭଳି ଭାଷାରେ ବର୍ଣ୍ଣନା କରଯାଇଅଛି ।

## ଜୀବନ ଚରିତ — ଶ୍ରୀଗୌରାଙ୍ଗ, ଠାକୁର ହରିଦାସ

ସରଳମତି ବାଳକ ବାଳିକାମାନଙ୍କ ପାଠୋପଯୋଗୀ ବାବାଜୀ-ପଦ୍ମଚରଣଙ୍କର ଅନ୍ୟ ଏକ ଜୀବନଚରିତାତ୍ମକ ପୁସ୍ତକ ହେଉଛି 'ଶ୍ରୀଗୌରାଙ୍ଗ'। ଶିକ୍ଷା ବିଭାଗର ତତ୍କାଳୀନ କତିପୟ ହରିଭକ୍ତିପରାୟଣ ବନ୍ଧୁଙ୍କ ଅନୁରୋଧରେ ସେ ଏହି ପୁସ୍ତକଟିକୁ ରଚନା କରିଥିଲେ ବୋଲି ଉତ୍ସର୍ଗ ପତ୍ରରେ ଉଲ୍ଲେଖ କରିଛନ୍ତି । ତେଣୁ ତାଙ୍କର ଏ ପ୍ରକାର ରଚନା ଯଥା "ଶ୍ରୀକୃଷ୍ଣ" ଓ "ଶ୍ରୀଗୌରାଙ୍ଗ" ପ୍ରଭୃତି ଜୀବନଚରିତ ଯେ ସେତେବେଳେ ବିଦ୍ୟାଳୟର ପାଠାଗାରମାନଙ୍କରେ ନିଶ୍ଚୟ ସ୍ଥାନ ପାଇଥିବ, ଏହା ନିଃସନ୍ଦେହ ଭାବରେ କୁହାଯାଇପାରେ ।

ଶ୍ରୀମଦ୍‌ଭାଗବତ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ ଶ୍ରୀକୃଷ୍ଣ ହେଉଛନ୍ତି ସ୍ୱୟଂ ଭଗବାନ । ଜୀବର ମଙ୍ଗଳ ପାଇଁ ସେ ସମୟାନୁସାରେ ମନୁଷ୍ୟ ରୂପରେ ପୃଥିବୀରେ ଜନ୍ମ ନିଅନ୍ତି । ଗୌଡ଼ୀୟ ବୈଷ୍ଣବ ଶାସ୍ତ୍ର ଅନୁସାରେ ଶ୍ରୀରାଧାକୃଷ୍ଣଙ୍କର ମିଳିତ ତନୁ ହେଉଛନ୍ତି ଶ୍ରୀଗୌରାଙ୍ଗ ଦେବ । ଆଜିକୁ ୫୦୫ ବର୍ଷ ପୂର୍ବେ ସେ ଏହି ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ ।

ଉପରୋକ୍ତ ଶ୍ରୀଗୌରାଙ୍ଗ ପୁସ୍ତକରେ ବାବାଜୀ ପଦ୍ମଚରଣ ଶ୍ରୀଗୌରାଙ୍ଗଦେବଙ୍କର ବାଲ୍ୟଲୀଳା, ପୌଗଣ୍ଡଲୀଳା, କୈଶୋର ଲୀଳା ଓ ଯୌବନଲୀଳା ଅପେକ୍ଷାକୃତ ବିଶଦ୍ ଭାବରେ ବର୍ଣ୍ଣନା କରିଛନ୍ତି କିନ୍ତୁ ତାଙ୍କର ସନ୍ନ୍ୟାସଲୀଳାକୁ ଅତି ସଂକ୍ଷିପ୍ତ ଆକାରରେ ଦର୍ଶାଇଛନ୍ତି । ତାଙ୍କର ସନ୍ନ୍ୟାସଲୀଳାକୁ ସେ ବିଶଦ୍ ଭାବରେ ଅନ୍ୟ ଏକ ଜୀବନଚରିତ "ଉତ୍କଳେ ଶ୍ରୀକୃଷ୍ଣଚୈତନ୍ୟ" ପୁସ୍ତକରେ ପ୍ରକାଶ କରିଛନ୍ତି ।

ଜଣେ ମହାପୁରୁଷଙ୍କ ଜୀବନଚରିତକୁ ଭିନ୍ନ ନାମ ଦେଇ ଦୁଇଖଣ୍ଡ ପୁସ୍ତକରେ ପ୍ରକାଶ କରିବାର ତାତ୍ପର୍ଯ୍ୟ ହେଉଛି ଯେ ଶ୍ରୀଗୌରାଙ୍ଗଙ୍କ ଜୀବନ-କାଳର ପ୍ରଥମ ଅର୍ଦ୍ଧେକ ଚବିଶ ବର୍ଷ ସେ ଶ୍ରୀଗୌରାଙ୍ଗ ନାମରେ ପରିଚିତ ହୋଇ ବଙ୍ଗଦେଶରେ ଯେଉଁ ସମସ୍ତ ଲୀଳା କରିଥିଲେ ତାହା 'ଶ୍ରୀଗୌରାଙ୍ଗ' ପୁସ୍ତକରେ ବର୍ଣ୍ଣିତ ହୋଇଛି । ୨୪ ବର୍ଷ ବୟସରେ ସେ ସନ୍ନ୍ୟାସ ନେବାରେ ତାଙ୍କର ସନ୍ନ୍ୟାସ-ନାମ ଶ୍ରୀକୃଷ୍ଣଚୈତନ୍ୟ ହେଲା ଏବଂ ସେହି ସମୟରୁ ଜୀବନର ପରବର୍ତ୍ତୀ ଚବିଶ ବର୍ଷକାଳ ସେ ଉତ୍କଳରେ ରହି ଯେଉଁ ସବୁ ଲୀଳା ସମ୍ପାଦନ କଲେ ତାହା 'ଉତ୍କଳେ ଶ୍ରୀକୃଷ୍ଣଚୈତନ୍ୟ' ପୁସ୍ତକରେ ବର୍ଣ୍ଣିତ ହୋଇଅଛି । ମୋଟ ଉପରେ ବାବାଜୀ ପଦ୍ମଚରଣ ଶ୍ରୀଗୌରାଙ୍ଗଦେବଙ୍କ ଲୀଳାଚରିତକୁ ଦୁଇ ଭାଗରେ ବିଭକ୍ତ କରି ପ୍ରଥମାର୍ଦ୍ଧ 'ଶ୍ରୀଗୌରାଙ୍ଗ' ପୁସ୍ତକରେ ଏବଂ ଦ୍ୱିତୀୟାର୍ଦ୍ଧ 'ଉତ୍କଳେ ଶ୍ରୀକୃଷ୍ଣଚୈତନ୍ୟ' ପୁସ୍ତକରେ ପ୍ରକାଶ କରିଛନ୍ତି ।

'ଶ୍ରୀଗୌରାଙ୍ଗ' ପୁସ୍ତକଟି ବାଳକବାଳିକା ମାନଙ୍କ ପାଇଁ ଉଦ୍ଦିଷ୍ଟ ହୋଇଥିବାରୁ ଏହାର ଭାଷା ଏବଂ ଭାବ ସରଳ ଏବଂ ସେମାନଙ୍କର ବୋଧ-ଉପଯୋଗୀ ହୋଇଛି । କିନ୍ତୁ "ଉତ୍କଳେ ଶ୍ରୀକୃଷ୍ଣଚୈତନ୍ୟ" ପୁସ୍ତକରେ ବାବାଜୀ ଶ୍ରୀଚୈତନ୍ୟଦେବଙ୍କର ଉତ୍କଳୀୟ ଲୀଳା, ଯଥା—ଶଚିମାତାଙ୍କ ନିର୍ଦ୍ଦେଶରେ ଶ୍ରୀମନ୍ ମହାପ୍ରଭୁ ଚୈତନ୍ୟଦେବଙ୍କର ଉତ୍କଳକୁ ଆଗମନ, ଶ୍ରୀ ବାସୁଦେବ ସାର୍ବଭୌମ ଭଟ୍ଟାଚାର୍ଯ୍ୟ, ରାଜଗୁରୁ ଶ୍ରୀ କାଶୀ ମିଶ୍ର, ମହାରାଜା ପ୍ରତାପରୁଦ୍ର ଦେବ ଓ ଶ୍ରୀରାୟରାମାନନ୍ଦଙ୍କ ସହିତ ତାଙ୍କର ଲୀଳା, ଗୁଣ୍ଡିଚା ମାର୍ଜନ ଓ ରଥଯାତ୍ରାରେ ତାଙ୍କର ସଙ୍କୀର୍ତ୍ତନ, ମହାପ୍ରଭୁଙ୍କର ପ୍ରକଟର ମୁଖ୍ୟ ଉଦ୍ଦେଶ୍ୟ, ଗମ୍ଭୀରାରେ ଭଗବତ୍-ରସ ଆସ୍ୱାଦନ ଏବଂ ତାଙ୍କର ଅପ୍ରକଟ ଲୀଳା ବିସ୍ତୃତ ଭାବରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସେ ସମୟରେ ଉତ୍କଳରେ ପଞ୍ଚସଖା ପ୍ରଭୃତି ବୈଷ୍ଣବ ମହାଜନଙ୍କ ସମ୍ବନ୍ଧରେ ଏବଂ ପରବର୍ତ୍ତୀ ଅବସ୍ଥାରେ ବୈଷ୍ଣବମାନଙ୍କର ବୈଷ୍ଣବଧର୍ମ-ବିରୋଧୀ ଆଚରଣ ସମ୍ପର୍କରେ ସମ୍ୟକ୍ ଆଲୋଚନା କରିଛନ୍ତି ।

ବାବାଜୀ ପଦ୍ମଚରଣଙ୍କ ରଚିତ ଅନ୍ୟ ଏକ ଜୀବନଚରିତାତ୍ମକ ପୁସ୍ତକ ହେଉଛି "ଠାକୁର ଶ୍ରୀ ହରିଦାସ" । ଠାକୁର ଶ୍ରୀହରିଦାସ ଥିଲେ ଶ୍ରୀକୃଷ୍ଣ-ଚୈତନ୍ୟଙ୍କ ଅତି ପ୍ରିୟ ପାର୍ଷଦ । ଶ୍ରୀଚୈତନ୍ୟ କହିବାଇରେ ଜୀବ

ଉଦ୍ଧାର ପାଇଁ ଶ୍ରୀଭଗବାନଙ୍କ ନାମ ଜପକୁ ମୁଖ୍ୟ ଉପାୟ ବୋଲି ନିର୍ଦ୍ଧାରଣ କରିଛନ୍ତି । ଏହି ନାମ ଗ୍ରହଣ ସମ୍ବନ୍ଧରେ ସେ ନାନା ଭାବେ ଉପଦେଶ ପ୍ରଦାନ କରିଛନ୍ତି ଯଥା—"ନାମେ ରୁଚି, ଜୀବେ ଦୟା", ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁନା, ଅମାନିନା ମାନଦେନ କୀର୍ତ୍ତନୀୟ ସଦା ହରି" ଇତ୍ୟାଦି । ଠାକୁର ଶ୍ରୀହରିଦାସ ଆଜୀବନ ପ୍ରତ୍ୟହ ତିନିଲକ୍ଷ ହରିନାମ ଜପ କରୁଥିଲେ । ତେଣୁ ଶ୍ରୀମନ୍ ମହାପ୍ରଭୁ ଚୈତନ୍ୟଦେବଙ୍କ ପ୍ରବର୍ତ୍ତିତ ନାମ ସାଧନାରେ ଠାକୁର ଶ୍ରୀହରିଦାସ ଥିଲେ ଜଣେ ଅଦ୍ଭୁତଶକ୍ତି ସମ୍ପନ୍ନ ସାଧକ । ଏହି କାରଣରୁ ବାବାଜୀ ପଦ୍ମଚରଣଙ୍କ ରଚିତ "ଠାକୁର ଶ୍ରୀହରିଦାସ"ଙ୍କ ଜୀବନ ଚରିତ ଉତ୍କଳୀୟ ବୈଷ୍ଣବ ସାହିତ୍ୟରେ ଏକ ମହାନ ସମ୍ପଦ ।

## ଜୀବନ ଚରିତ—ଶ୍ରୀ ରାୟ ରାମାନନ୍ଦ

### [କ]

ପ୍ରେମିକଶିରୋମଣି ଭଗବାନ ଶ୍ରୀକୃଷ୍ଣ, ପ୍ରେମାବତାର ଶ୍ରୀଗୌରାଙ୍ଗ ଏବଂ ତଦୀୟ ଅତି ପ୍ରିୟ ପାର୍ଷଦ ଠାକୁର ଶ୍ରୀହରିଦାସଙ୍କ ସମ୍ବନ୍ଧରେ ଜୀବନ-ଚରିତାତ୍ମକ ପୁସ୍ତକମାନ ସାଙ୍ଗକୁ ବାବାଜୀ ପଦ୍ମଚରଣ ଉତ୍କଳର ତଦାନୀନ୍ତନ ବୈଷ୍ଣବାଗ୍ରଗଣ୍ୟ ପୁରିଜଣ ମହାତ୍ମାଙ୍କର ଜୀବନଚରିତ ପ୍ରକାଶ କରି ଉତ୍କଳ ସାହିତ୍ୟର ଅଭିବୃଦ୍ଧି କରିବା ସଙ୍ଗେ ସଙ୍ଗେ ଉତ୍କଳୀୟମାନଙ୍କ ପାଇଁ ମହାନ ସମ୍ପଦ ରଖି ଯାଇଛନ୍ତି । ସେମାନେ ହେଲେ ମହାରାଜା ପ୍ରତାପରୁଦ୍ର ଦେବ, ଶ୍ରୀରାୟରାମାନନ୍ଦ, ପ୍ରଭୁ ଶ୍ୟାମାନନ୍ଦ ଓ ପ୍ରଭୁ ରସିକାନନ୍ଦ ଦେବ । ସେମାନଙ୍କ ସମ୍ବନ୍ଧରେ ସେ ତାଙ୍କର ଓଡ଼ିଆ କୀର୍ତ୍ତନ (୨ୟ ଭାଗ) ରେ ଲେଖିଛନ୍ତି—

ଭସାଇଲେ ଯେ ଉତ୍କଳ କୃଷ୍ଣ-ପ୍ରେମ-ରସେ
କାହାନ୍ତି ସେ ଶ୍ୟାମାନନ୍ଦ ଶ୍ୟାମ ଯାର ବଶେ ।

କାହାନ୍ତି ରସିକାନନ୍ଦ ଉତ୍କଳ ମିହିର
ତାଙ୍କ ବିନା ଘୋଟି ଅଛି ପ୍ରଗାଢ ତିମିର ।

କାହିଁ ଗଲେ ରାମାନନ୍ଦ ପ୍ରେମରସ-ଖଣି
ଶୁଣାଇବ ରସତତ୍ତ୍ୱ କେ ଆଉ ବଖାଣି ।

କାହାନ୍ତି ପ୍ରତାପରୁଦ୍ର ନରେନ୍ଦ୍ରଶେଖର
ରାଜନ୍ୟ ମଣ୍ଡଳେ ଯେହୁ ଆଦର୍ଶ ସୁନ୍ଦର ।
ଥିଲେ ଏମାନଙ୍କ ଭଳି ଜଣେ ଏହିକ୍ଷଣି
ଏ ଦୁଃଖ ନ ଯାନ୍ତା ପଦ୍ମ ଦିବସ ରଜନୀ ।

ମହାରାଜା ପ୍ରତାପରୁଦ୍ର ଦେବ ଓ ରାୟରାମାନନ୍ଦ ଶ୍ରୀମନ୍ ମହାପ୍ରଭୁ ଗୌରାଙ୍ଗଦେବଙ୍କ ସମସାମୟିକ ଏବଂ ପ୍ରଭୁ ଶ୍ୟାମାନନ୍ଦ ଓ ପ୍ରଭୁ ରସିକାନନ୍ଦ ଦେବ ତାଙ୍କର ଅବ୍ୟବହିତ ପରବର୍ତ୍ତୀ ସମୟରେ ବୈଷ୍ଣବଧର୍ମର ପ୍ରସିଦ୍ଧ ପ୍ରଚାରକ ଥିଲେ । ଏମାନଙ୍କ ମଧ୍ୟରୁ ପ୍ରତାପରୁଦ୍ରଦେବଙ୍କ ଜୀବନ-ଚରିତ ବାବାଜୀ ପଦ୍ମଚରଣ ଲେଖି ପ୍ରକାଶ କରିଛନ୍ତି ଏକ ନାଟକ ଆକାରରେ । ତାହା ପୂର୍ବରୁ ଆଲୋଚିତ ହୋଇଛି ।

ବାବାଜୀ ପଦ୍ମଚରଣ ରାୟରାମାନନ୍ଦଙ୍କ ଜୀବନ " ଶ୍ରୀରାୟରାମାନନ୍ଦ " ନାମକ ଗ୍ରନ୍ଥରେ ପ୍ରକାଶ କଲେ ୧୯୨୨ ମସିହାର ଶେଷ ଭାଗରେ ।

ଯେତେବେଳେ ମହାପ୍ରଭୁ ଶ୍ରୀଗୌରାଙ୍ଗଦେବ ସନ୍ନ୍ୟାସ ଗ୍ରହଣ ପୂର୍ବକ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଆସି ବାସ କଲେ, ଶ୍ରୀପ୍ରତାପରୁଦ୍ରଦେବ ସେତେବେଳେ ଉତ୍କଳର ରାଜା । ତାଙ୍କର ରାଜ୍ୟ ଉତ୍ତରରେ ତ୍ରିବେଣୀ ( ଗଙ୍ଗାନଦୀର ଏକ ଘାଟ ) ଠାରୁ ଦକ୍ଷିଣରେ ରାମେଶ୍ୱର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ରାୟ ରାମାନନ୍ଦ ତାଙ୍କ ରାଜଦରବାରରେ ମନ୍ତ୍ରୀ ଥାଆନ୍ତି । ତାଙ୍କର ଯୋଗ୍ୟତା ଓ ବିଚକ୍ଷଣତାରେ ପ୍ରତାପରୁଦ୍ର ପ୍ରୀତ ହୋଇ ତାଙ୍କୁ ରାଜମାହେନ୍ଦ୍ରୀର ଶାସନକର୍ତ୍ତା ଭାବରେ ପଠାଇଥାନ୍ତି । ମହାପ୍ରଭୁ ନିଳାଚଳରେ କିଛିଦିନ୍ ଅବସ୍ଥାନ କରି ଦାକ୍ଷିଣାତ୍ୟ ଯାଇଥିବା ସମୟରେ ରାଜମାହେନ୍ଦ୍ରୀଠାରେ ରାୟରାମାନନ୍ଦଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଉଭୟଙ୍କ ମଧ୍ୟରେ ରସତତ୍ତ୍ୱ ଓ ସାଧ୍ୟ - ସାଧନ ସମ୍ବନ୍ଧରେ ଭାବ ବିନିମୟ ପରେ ଉଭୟେ ଉଭୟଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଲେ । ଶେଷରେ ରାୟରାମାନନ୍ଦ ରାଜ୍ୟର ସମସ୍ତ ଭାର ମହାରାଜା ପ୍ରତାପରୁଦ୍ରଙ୍କୁ ବୁଝାଇ

ଦେଇ ରାଜକାର୍ଯ୍ୟରୁ ନିଷ୍କୃତି ନେଲେ ଏବଂ ପରବର୍ତ୍ତୀ ଜୀବନ ଶ୍ରୀମନ୍ ମହାପ୍ରଭୁଙ୍କ ଗହଣରେ କଟାଇଥିଲେ । ମହାପ୍ରଭୁଙ୍କର ଯେଉଁ ଅନ୍ୟ ୩ଜଣ ଅନ୍ତରଙ୍ଗ ପାର୍ଶ୍ୱଦ ଥିଲେ, ସେମାନଙ୍କ ମଧ୍ୟରେ ରାୟରାମାନନ୍ଦ ଅନ୍ୟତମ । ତାଙ୍କ ସମ୍ବନ୍ଧରେ ବିଶେଷ ବିବରଣୀ ଶ୍ରୀଚୈତନ୍ୟ ଚରିତାମୃତ, ଭକ୍ତିରତ୍ନାକର, ଗୌରଗଣଦୀପିକା, ଦିନମଣି ଚନ୍ଦ୍ରୋଦୟ ଏବଂ ଶ୍ରୀରୂପ ଗୋସ୍ୱାମୀଙ୍କ ରଚିତ ନାଟକମାନଙ୍କରେ ମିଳେ । ପଣ୍ଡିତ ପ୍ରବର ଶ୍ରୀରସିକମୋହନ ବିଦ୍ୟାଭୂଷଣ ଏହାଙ୍କ ବିଷୟରେ "ଶ୍ରୀରାୟରାମାନନ୍ଦ" ନାମକ ଖଣ୍ଡିଏ ବଙ୍ଗଳା ପୁସ୍ତକ ମଧ୍ୟ ପ୍ରଣୟନ କରିଛନ୍ତି ।

ଏକାଧିକ ଅଣଓଡ଼ିଆ ପୁସ୍ତକରେ ବିଶିଷ୍ଟ ସ୍ଥାନ ଅଧିକାର କରିଥିବା ଉତ୍କଳୀୟମାନଙ୍କ ମଧ୍ୟରେ ଶ୍ରୀରାୟ ରାମାନନ୍ଦ ପ୍ରଥମ ଓ ପ୍ରଧାନ ବୋଲି ମନେ ହୁଏ । ଶ୍ରୀରାୟ ରାମାନନ୍ଦ ଯେ କି ଏକ ବିରାଟ ଓ ମହାନ ବ୍ୟକ୍ତିତ୍ୱ, ତାହା ପରିବ୍ରାଜକାଚାର୍ଯ୍ୟ ପରମହଂସ ଠାକୁର ଶ୍ରୀମଦ୍ ଶ୍ରୀଶ୍ରୀ ନିଗମାନନ୍ଦ ସରସ୍ୱତୀଦେବଙ୍କ ନିମ୍ନ ଉକ୍ତିରୁ ଜଣାଯାଏ ।

"ରାୟ ରାମାନନ୍ଦ, ବିଦ୍ୟାପତି, ଚଣ୍ଡୀଦାସ, ବିଲ୍ୱମଙ୍ଗଳ ଓ ଜୟଦେବ —ଏମାନେ ପଞ୍ଚରସିକ ଭକ୍ତ । ଏମାନେ କାମଜୟୀ ସିଦ୍ଧ ପୁରୁଷ ଥିଲେ । ଏହି ପଞ୍ଚରସିକଙ୍କ ମଧ୍ୟରେ ରାୟ ରାମାନନ୍ଦହିଁ ସର୍ବଶ୍ରେଷ୍ଠ । ସେ ସାକ୍ଷାତ୍ ମଦନ – ମୋହନ ଥିଲେ, ତେଣୁ ସେ ମହାପ୍ରଭୁଙ୍କର ଏତେ ଅନ୍ତରଙ୍ଗ ହୋଇପାରିଥିଲେ । ରାୟ ରାମାନନ୍ଦ ପ୍ରକୃତ ଭବରେ ଶ୍ରୀକୃଷ୍ଣଙ୍କ ମଧୁର ଲୀଳା ଜଗତକୁ ଦେଖାଇ ଯାଇଛନ୍ତି । ସୁନ୍ଦରୀ ଯୁବତୀଙ୍କର ସର୍ବାଙ୍ଗ ସେବାକରି ମଧ୍ୟ ସେ ନିର୍ବିକାର ଥିଲେ । ତାଙ୍କ ସାଧନାରେ ବିଶିଷ୍ଟ ନାୟିକା କେହିଁ ନଥିଲେ । ଏହାହିଁ ତାଙ୍କର ବିଶେଷତ୍ୱ ।"

ବାବାଜୀ ପଦ୍ମଚରଣ ଏହିପରି ଗୋଟିଏ ଉଜ୍ଜ୍ୱଳ ଓ ମହୀୟାନ ଜୀବନଚରିତକୁ ପ୍ରଥମ କରି ଉତ୍କଳ ଭଷାରେ ସର୍ବଜନବିଦିତ କରି ଯେ କେତେ ମହତ କାର୍ଯ୍ୟ ସମ୍ପନ୍ନ କରିଛନ୍ତି, ତାହା ବର୍ଣ୍ଣନା ନିଷ୍ପ୍ରୟୋଜନ ।

[ ଖ: ]

ବାବାଜୀ ପଦ୍ମଚରଣଙ୍କ କୃତ " ଶ୍ରୀରାୟ ରାମାନନ୍ଦ " ପୁସ୍ତକରୁ ଜଣାଯାଏ ଯେ ଶ୍ରୀରସିକମୋହନ ବିଦ୍ୟାଭୂଷଣଙ୍କ ରଚିତ ଶ୍ରୀରାୟ ରାମାନନ୍ଦ ନାମକ ବଙ୍ଗଳା ଗ୍ରନ୍ଥ ଅନୁସାରେ ଶ୍ରୀରାୟ ରାମାନନ୍ଦଙ୍କ ଗୃହ ଯାଜପୁର ଅଧୀନ ରାମାଇଁ ଆନନ୍ଦପୁର ଗ୍ରାମରେ ଥିଲା । ଶ୍ରୀ ଚୈତନ୍ୟ ଚରିତାମୃତରେ ଶ୍ରୀ ଗୋପୀନାଥ ପଟ୍ଟନାୟକ ଓ ଶ୍ରୀ ବାଣୀନାଥ ପଟ୍ଟନାୟକ ରାୟ ରାମାନନ୍ଦଙ୍କର ଭ୍ରାତା ବୋଲି ଉଲ୍ଲେଖ ଅଛି । ବାବାଜୀ ପଦ୍ମଚରଣ ଅନୁସନ୍ଧାନ କରି ଜାଣି ପାରିଥିଲେ ଯେ ଏହି ଗୋପୀନାଥ ପଟ୍ଟନାୟକଙ୍କ ଗୃହ ପୁରୀ ଜିଲ୍ଲା ଶ୍ରୀଅଲାରନାଥରୁ ଏକ ମାଇଲ ଦୂର ବ୍ରହ୍ମଗିରି ଥାନା ଇଲକା ଅନ୍ତର୍ଗତ ବେଣ୍ଟପୁର ଗ୍ରାମରେ । କିନ୍ତୁ ଏ ଦିଗରେ ସେ ନିର୍ଭରଯୋଗ୍ୟ ପ୍ରମାଣ ସଂଗ୍ରହ କରିବାକୁ ସମର୍ଥ ହୋଇ ପାରି ନଥିଲେ । ଶ୍ରୀ ରାୟ ରାମାନନ୍ଦଙ୍କ ଶେଷ ଜୀବନ କେଉଁଠାରେ କିପରି ଅତିବାହିତ ହେଲା ଏବଂ ସେ କେବେ ଅପ୍ରକଟ ହେଲେ ଏ ସମସ୍ତ ବିଷୟ ଉପରୋକ୍ତ ଗ୍ରନ୍ଥମାନଙ୍କରେ ଉଲ୍ଲେଖ ନଥିବାରୁ ବାବାଜୀ ପଦ୍ମଚରଣ ତାଙ୍କ ରଚିତ ପୁସ୍ତକରେ ସେ ସମ୍ବନ୍ଧରେ କିଛି ପ୍ରକାର ଆକ୍ଷେପ କରି ନ ପାରି ପରିଶେଷରେ ନିଜର ଅକ୍ଷମତା ପ୍ରତିପନ୍ନ କରି ଲେଖିଛନ୍ତି ଯେ " ଉତ୍କଳର ଗୌରବରବି ଶ୍ରୀଳ ରାମାନନ୍ଦଙ୍କ ବିଷୟରେ ଆଉ କିଛି ଜାଣି ନପାରି ଏହିଠାରେ ଗ୍ରନ୍ଥ ସମାପ୍ତ କଲି । ଶ୍ରୀଳ ରାମାନନ୍ଦ ରାୟ କୃପାପୂର୍ବକ ଅନ୍ୟ କେହି ଯୋଗ୍ୟତମ ପାତ୍ର ଦ୍ୱାରା ତାଙ୍କର ସମସ୍ତ ଚରିତ ଉତ୍ତମ ରୂପେ ବର୍ଣ୍ଣନା କରାନ୍ତୁ ।

ଏହି ପୁସ୍ତକ ପ୍ରଥମେ ପ୍ରବନ୍ଧ ଆକାରରେ ଧାରାବାହିକ ଭାବେ ମାସିକ ପତ୍ରିକା " ମୁକୁର "ରେ ପ୍ରକାଶ ପାଇଥିଲା । ତାପରେ ପଣ୍ଡିତ ନୀଳକଣ୍ଠ ଦାଶ, ଏମ୍. ଏ: ମହୋଦୟଙ୍କ ଅନୁରୋଧ କ୍ରମେ ଏହାକୁ ବାବାଜୀ ପଦ୍ମଚରଣ ପୁସ୍ତକ ଆକାରରେ ୧୯୨୨ ମସିହା ଶେଷ ଭାଗରେ ପ୍ରକାଶ କଲେ । ପଣ୍ଡିତ ନୀଳକଣ୍ଠଙ୍କ ଭଳି ପ୍ରତିଭା ସେତେବେଳେ ଏହି ପୁସ୍ତକର ସାରବତ୍ତା ହୃଦୟଙ୍ଗମ କରିପାରିଥିଲେ, ସେତେବେଳେ ଏହାର ଉପାଦେୟତା ସମ୍ବନ୍ଧରେ ବର୍ଣ୍ଣନା ଏଠାରେ କରିବା ନିଷ୍ପ୍ରୟୋଜନ ।

ପ୍ରାୟ ଚାଳିଶ ବର୍ଷ ପରେ ୧୯୭୩ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀଙ୍କ ଦ୍ୱାରା ପ୍ରକାଶ ପାଇଲା "ରାୟ ରାମାନନ୍ଦ" ପୁସ୍ତକ ।

ବାବାଜୀ ପଦ୍ମଚରଣଙ୍କ ଆଶା ସତେ ଏତେ ଦିନେ ଫଳବତୀ ହେଲା ! 'ଅନ୍ୟ କେହି ଯୋଗ୍ୟତମ ପାତ୍ର ଦ୍ୱାରା' ସତେ କଣ ରାୟ ରାମାନନ୍ଦଙ୍କ ସମ୍ବନ୍ଧରେ ସମସ୍ତ ଚରିତ ଅଧିକତର ନିଖୁଣ ଭାବରେ ପ୍ରକାଶ ପାଇଲା !!

ଏହି ନବ ପ୍ରକାଶିତ ପୁସ୍ତକର ସପ୍ତମ ପୃଷ୍ଠାରେ ଉଲ୍ଲେଖ କରାଯାଇଛି ଯେ—

"ରାମାନନ୍ଦ ଶାସନକ୍ଷେତ୍ରରେ ଅତିଶୟ ଉଦାସୀନ ଥିଲେ । ସବୁବେଳେ ସଂସାର-ଧର୍ମ ସମ୍ବନ୍ଧରେ ଉଦାସୀନ ରହି କେବଳ ସାଧନ, ଭଜନ ଏବଂ କୃଷ୍ଣଭାବରେ ବୁଡ଼ି ରହୁଥିଲେ । ସେ ପ୍ରତାପରୁଦ୍ରଙ୍କ ପୁଅ ବୀରଭଦ୍ର ଓ ଅନ୍ୟ ଅନଭିଜ୍ଞ ଯୁବକ ଶାସକମାନଙ୍କ ହାତରେ ରାଜ୍ୟଶାସନ ଟେକି ଦେଇ ଚୈତନ୍ୟଦେବଙ୍କ ପ୍ରବର୍ତ୍ତନାରେ ପୁରୀ ପଳାଇ ଆସିବାରୁ ଦାକ୍ଷିଣାତ୍ୟ ଦେଶ-ଗୁଡ଼ିକୁ ମୁସଲମାନ ରାଜଶକ୍ତି ଦଖଲ କରିଗଲା ।"

ଏ କଅଣ ? ମନରେ ପ୍ରଶ୍ନ ଉଠେ ସତେ କଅଣ ରାୟ ରାମାନନ୍ଦ ଏତେ ଦାୟିତ୍ୱହୀନ ଥିଲେ ? ଶ୍ରୀମନ୍ ମହାପ୍ରଭୁ ଚୈତନ୍ୟଦେବଙ୍କ ଭଳି ଅବତାରୀ ପୁରୁଷ କଅଣ ଏଭଳି କରିବା ପାଇଁ ଶ୍ରୀରାୟଙ୍କୁ ପ୍ରବର୍ତ୍ତାଇଥିଲେ ??

ବାବାଜୀ ପଦ୍ମଚରଣ ଏ ସମ୍ବନ୍ଧରେ ତାଙ୍କ ପୁସ୍ତକର ୬୪ ପୃଷ୍ଠାରେ ଲେଖିଛନ୍ତି—"ରାମାନନ୍ଦ ରାୟ ଅତି ବିଚକ୍ଷଣତା ସହିତ ଦକ୍ଷିଣ ଦେଶ ଶାସନ କରୁଥିଲେ, ଏପରିକି ସେତେବେଳେ ତାଙ୍କୁ ରାଜମାହେନ୍ଦ୍ରୀର ରାଜା କହିଲେ ଚଳେ ।" ଉକ୍ତ ପୁସ୍ତକର ପୃ ୧୨୩ରେ ସେ ରାମାନନ୍ଦଙ୍କର ଶ୍ରୀଚୈତନ୍ୟଙ୍କୁ କହିବାର ଉଲ୍ଲେଖ କରିଛନ୍ତି—"ପ୍ରଭୋ ! ଆପଣଙ୍କ ଦର୍ଶନ ପରେ ମହାରାଜଙ୍କୁ ମୋର କାର୍ଯ୍ୟତ୍ୟାଗର ବାସନା ଜଣାଇ ପତ୍ର ଲେଖିଥିଲି । ମହାରାଜା ମଧ୍ୟ ତାହା ଅନୁମୋଦନ କରିଅଛନ୍ତି । ତେଣୁ ମୁଁ ଏ ବିଦ୍ୟାନଗର ପରିତ୍ୟାଗ କରିବାର ଉଦ୍ୟୋଗ କରିଅଛି କିନ୍ତୁ ଅତି ଅଳ୍ପ କାର୍ଯ୍ୟ ଅବଶିଷ୍ଟ ଅଛି । ଆପଣ ଆଗେ ଯିବା ହେଉନ୍ତୁ, ମୁଁ ଦଶଦିନ ମଧ୍ୟରେ ସମସ୍ତ ବନ୍ଦୋବସ୍ତ କରାଇଦେଇ ଯାଉଅଛି ।" ପୁଣି ପୁସ୍ତକର ପୃ ୧୨୭ଷ୍ଠାରେ ସେ ଲେଖିଛନ୍ତି—

"ସେ ( ରାୟ ରାମାନନ୍ଦ ) ପ୍ରଭୁଙ୍କ ପୁରୁଷୋତ୍ତମ ଯାତ୍ରାର ଅଳ୍ପଦିନ ମଧ୍ୟରେ ରାଜ୍ୟର ସମସ୍ତ ସୁବନ୍ଦୋବସ୍ତ ସମାପନ-ପୂର୍ବକ କଟକାଭିମୁଖରେ ଯାତ୍ରା କଲେ । ସେ ବିଦ୍ୟାନଗରର ଶାସନକର୍ତ୍ତା, ଅତଏବ ରାଜ୍ୟର ସମସ୍ତ ଭାର ମହାରାଜାଙ୍କୁ ବୁଝାଇ ନ ଦେବା ପର୍ଯ୍ୟନ୍ତ ତାଙ୍କ ମନରେ ଶାନ୍ତି ନ ଥିଲା । ସେ କର୍ତ୍ତବ୍ୟନିଷ୍ଠ ଲୋକ । ଅତଏବ ଆଗେ ଶ୍ରୀପୁରୁଷୋତ୍ତମକୁ ନ ଯାଇ କଟକକୁ ଯାତ୍ରା କଲେ । ଇଚ୍ଛା, ରାଜକାର୍ଯ୍ୟର ଦାୟିତ୍ୱ ସମସ୍ତ ବୁଝାଇ ଦେଇ ନିଶ୍ଚିନ୍ତ ମାନସରେ ମହାପ୍ରଭୁଙ୍କ ଶ୍ରୀଚରଣ ଦର୍ଶନ କରିବେ । କର୍ମତ୍ୟାଗ ପାଇଁ ପୂର୍ବରୁ ପତ୍ର ଦ୍ୱାରା ମହାରାଜାଙ୍କର ଅନୁମତି ପାଇଥିଲେ, ବର୍ତ୍ତମାନ ନିଜେ ମହାରାଜାଙ୍କୁ ଦର୍ଶନ କରି ସମସ୍ତ ଉତ୍ତମ ରୂପେ ବୁଝାଇ ଦେଲେ । ମହାରାଜା ନିଜେ ଗୁଣୀ ଥିବାରୁ ଗୁଣର ଆଦର କରୁଥିଲେ ।"

* * *

[ ୭ ]

ବାବାଜୀ ପଦ୍ମଚରଣଙ୍କ ରଚିତ "ଶ୍ରୀରାୟରାମାନନ୍ଦ" ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀଙ୍କ ଦ୍ୱାରା ପ୍ରକାଶିତ "ରାୟ ରାମାନନ୍ଦ" ପୁସ୍ତକ ଦ୍ୱୟରେ ଶ୍ରୀରାୟ ରାମାନନ୍ଦଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ସମ୍ବନ୍ଧରେ ପରସ୍ପର ବିରୋଧାତ୍ମକ ବର୍ଣ୍ଣନା ଯୋଗୁଁ ପାଠକ ମନରେ ସ୍ୱତଃ ପ୍ରଶ୍ନ ଉଠେ – କେଉଁଟା ଠିକ୍ ? ବାବାଜୀ ପଦ୍ମଚରଣଙ୍କ ଭଳି ଜଣେ ସାଧୁ ସନ୍ଥ କଣ ରାୟ ରାମାନନ୍ଦଙ୍କ ସମ୍ବନ୍ଧରେ ଏପରି ଏକ ଭୁଲ ତଥ୍ୟ ଲେଖିଗଲେ ? ଅପର ପକ୍ଷରେ ଓଡ଼ିଶା ସାହିତ୍ୟ ଏକାଡେମୀ ଭଳି ଗୋଟିଏ ଦାୟିତ୍ୱ ସମ୍ପନ୍ନ ସଂସ୍ଥା ବିଚାର ନ କରି କଅଣ ରାୟ ରାମାନନ୍ଦଙ୍କ ବ୍ୟକ୍ତିତ୍ୱରେ ଆଞ୍ଚ ଆଣୁଥିବା ଏପରି ଲେଖାକୁ ପ୍ରକାଶ କରିଦେଲେ ? ଏହି ପ୍ରଶ୍ନବାଚୀର ସମାଧାନ ପାଇଁ ଦୁଇଟି ପୁସ୍ତକକୁ ମିଳାଇ ପାଠ କରିବାରେ ଏକାଡେମୀଙ୍କ ଦ୍ୱାରା ପ୍ରକାଶିତ "ରାୟ ରାମାନନ୍ଦ" ପୁସ୍ତକର ଅନେକ ସ୍ଥାନରେ ବାବାଜୀ ପଦ୍ମଚରଣଙ୍କ "ଶ୍ରୀରାୟ ରାମାନନ୍ଦ" ପୁସ୍ତକରୁ ନକଲ କରି ପ୍ରକାଶ କରା ଯାଇଛି ବୋଲି ମନେହୁଏ । ସେ ସବୁରୁ କେତେକ ଏଠାରେ ଉଲ୍ଲେଖ କରିବା ପ୍ରାସଙ୍ଗିକ ହେବ ॥

| ବାବାଜୀ ପଦ୍ମଚରଣଙ୍କ ରଚିତ “ ଶ୍ରୀରାୟ ରାମାନନ୍ଦ ” | ଓଡ଼ିଶା ସାହିତ୍ୟ ଏକାଡେମୀଙ୍କ ଦ୍ୱାରା ପ୍ରକାଶିତ “ ରାୟ ରାମାନନ୍ଦ ” |
|---|---|
| ପୃ ୫୩ ଷ୍ଠା— | ପୃ ୫୭ ଷ୍ଠା |
| ପୃ ୫୮ ଷ୍ଠା— | ପୃ ୫୮ ଷ୍ଠା |
| ପୃ ୬୬ ଷ୍ଠା— | ପୃ ୬୦ ଷ୍ଠା |
| ପୃ ୭୩ ଷ୍ଠା— | ପୃ ୬୪ ଷ୍ଠା |
| ପୃ ୭୯ ଷ୍ଠା— | ପୃ ୧୩୧ ଷ୍ଠା |
| ପୃ ୮୯ ଷ୍ଠା— | ପୃ ୧୩୫ ଷ୍ଠା |
| ପୃ ୯୪ ଷ୍ଠା— | ପୃ ୧୩୯ ଷ୍ଠା |
| ପୃ ୧୮୯ ଷ୍ଠା— | ପୃ ୮୯ ଷ୍ଠା |

ଦୁଇଟି ପୁସ୍ତକ ବିଷୟ ଶିରୋନାମା ’ ନିମ୍ନସ୍ଥଳରେ ସାମାନ୍ୟ ବଦଳା ବଦଳି ସତ୍ତ୍ୱେ ଏକା ଭଳି ମନେ ହୁଏ ।

| ଶ୍ରୀରାୟ ରାମାନନ୍ଦ | ରାୟ ରାମାନନ୍ଦ |
|---|---|
| ଶ୍ରୀକୃଷ୍ଣତତ୍ତ୍ୱ—ପୃ ୫୦ ଷ୍ଠା.......... ............ | ରାମାନନ୍ଦଙ୍କର ଶ୍ରୀଚୈତନ୍ୟଙ୍କୁ କୃଷ୍ଣତତ୍ତ୍ୱ କଥନ - ପୃ ୫୫ ଷ୍ଠା |
| ଶ୍ରୀରାଧାତତ୍ତ୍ୱ—ପୃ ୬୬ ଷ୍ଠା................. | ରାୟରାମାନନ୍ଦଙ୍କ ଶ୍ରୀଚୈତନ୍ୟଙ୍କୁ ଶ୍ରୀରାଧାତତ୍ତ୍ୱ କଥନ ପୃ-୬୦ ଷ୍ଠା |
| ବିଳାସ ମହତ୍ତ୍ୱ—ପୃ ୭୭ ଷ୍ଠା.............. | ରାୟରାମାନନ୍ଦଙ୍କ ଯୁଗଳ ବିଳାସ ଓ ବିବର୍ତ୍ତତତ୍ତ୍ୱ କଥନ ପୃ ୧୨୯ ଷ୍ଠା |
| ପ୍ରେମ ବିଳାସ ବିବର୍ତ୍ତ—ପୃ ୮୬ ଷ୍ଠା........... ..... | ପ୍ରେମ ବିଳାସ ବିବର୍ତ୍ତ ବ୍ୟାଖ୍ୟା କଥନ-ପୃ ୧୩୪ଷ୍ଠା |
| ସାଧନ ତତ୍ତ୍ୱ ବା ଭକ୍ତିତତ୍ତ୍ୱ—ପୃ ୯୩ ଷ୍ଠା........... | ଶ୍ରୀରାମାନନ୍ଦଙ୍କ ଭକ୍ତିତତ୍ତ୍ୱ କଥନ-ପୃ ୧୩୮ ଷ୍ଠା |
| ପ୍ରଦ୍ୟୁମ୍ନ ମିଶ୍ରଙ୍କ କୃଷ୍ଣକଥା ଶ୍ରବଣ— ପୃ ୧୭୭ ଷ୍ଠା...................,......... | ରାୟ ରାମାନନ୍ଦ ଓ ପ୍ରଦ୍ୟୁମ୍ନ ମିଶ୍ର ସମ୍ବାଦ - ପୃ ୮୫ ଷ୍ଠା |

ଉଭୟ ପୁସ୍ତକକୁ ପୁଙ୍ଖାନୁପୁଙ୍ଖ ଭାବରେ ପରୀକ୍ଷା ନିରିକ୍ଷା କଲେ ହୁଏତ ଆହୁରି କିଛି ଜଣା ପଡ଼ି ପାରେ ।

ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ସାହିତ୍ୟ ଏକାଡେମୀଙ୍କ କର୍ତ୍ତୃକ ପ୍ରକାଶିତ "ରାୟ ରାମାନନ୍ଦ" ପୁସ୍ତକର "ପ୍ରାକ୍-କଥନ"ରେ ଏକାଡେମୀର ସେକ୍ରେଟେରୀ ଲେଖିଛନ୍ତି ଯେ—"ଆଜିକି ପ୍ରାୟ ପଚିଶ ବର୍ଷ ତଳେ ରାୟ ରାମାନନ୍ଦଙ୍କର ଜୀବନୀ ପ୍ରକାଶ ପାଇଥିଲା । ସେ ପୁସ୍ତକ ବର୍ତ୍ତମାନ ଦୁଷ୍ପ୍ରାପ୍ୟ ।" ଏହି ପୁସ୍ତକର ଲେଖିକା ମଧ୍ୟ "ମୋର ବକ୍ତବ୍ୟ" ଶିରୋନାମାରେ ଲେଖିଛନ୍ତି ଯେ "ରାୟ ରାମାନନ୍ଦଙ୍କ ଜୀବନ ସମ୍ବନ୍ଧେ ଶ୍ରୀ ପାର୍ବତୀ ଚରଣ ଦାସ ବହି ଲେଖିଥିଲେ ।" ବାବାଜୀ ପଦ୍ମଚରଣଙ୍କର ପୂର୍ବାଶ୍ରମର ନାମ ପାର୍ବତୀ ଚରଣ ଦାସ ଥିଲା । ଏଥିରୁ ସ୍ପଷ୍ଟ ଜଣାପଡ଼ୁଛି ଯେ ଲେଖିକା ଏବଂ ଏକାଡେମୀର ସେକ୍ରେଟେରୀ ମହୋଦୟ ଉଭୟେ ବାବାଜୀ ପଦ୍ମଚରଣଙ୍କ କୃତ "ଶ୍ରୀ ରାୟ ରାମାନନ୍ଦ" ପୁସ୍ତକ ସମ୍ବନ୍ଧରେ ସମ୍ପୂର୍ଣ୍ଣ ରୂପେ ଅବହିତ ଥିଲେ ।

ସବୁଠାରୁ ବଡ଼ ଦୁର୍ଭାଗ୍ୟର ବିଷୟ ଯେ ସାହିତ୍ୟ ଏକାଡେମୀ ଭଳି ଏକ ଦାୟିତ୍ୱସମ୍ପନ୍ନ ସଂସ୍ଥା ଅନେକ ଦୁଷ୍ପ୍ରାପ୍ୟ ଏବଂ ଲୁପ୍ତପ୍ରାୟ ଉତ୍କଳ ଭାଷାରେ ରଚିତ ପୁସ୍ତକ ପୁନଃପ୍ରକାଶ କରି ଲୋକଲୋଚନକୁ ଆଣୁଥିବା ସ୍ଥଳେ ବାବାଜୀ ପଦ୍ମଚରଣଙ୍କ ରଚିତ "ଶ୍ରୀରାୟ ରାମାନନ୍ଦ" ପୁସ୍ତକ "ବର୍ତ୍ତମାନ ଦୁଷ୍ପ୍ରାପ୍ୟ" ବୋଲି କହୁଥିବାବେଳେ ତାହାର ପୁନଃମୁଦ୍ରଣ ବ୍ୟବସ୍ଥା ନ କରି ଏପରି ଏକ ନକଲ କରାଯାଇଥିବା ପୁସ୍ତକକୁ ପ୍ରକାଶ କଲେ କିପରି ? ଏହି ସାଧାରଣ ପ୍ରଶ୍ନର ଏକ ଉପରଠାଉରିଆ କୈଫିୟତ୍ ଅବଶ୍ୟ ସେକ୍ରେଟେରୀ ମହୋଦୟ ତାଙ୍କ "ପ୍ରାକ୍-କଥନର" ପ୍ରଥମ ପଙ୍କ୍ତିରେ ଦେଇଛନ୍ତି । ସେ ଲେଖିଛନ୍ତି—"ତାଙ୍କର ଜୀବନୀ ନାନା ଭାବରେ ପ୍ରଚାରିତ ଓ ଆଲୋଚିତ ହେଲେ ପ୍ରତିଭା ପୂଜା ମାଧ୍ୟମରେ ଜାତୀୟ ଚେତନାର ଜାଗୃତି ଘଟିବା ସୁନିଶ୍ଚିତ ।" ଏହି "ନାନା ଭାବରେ" ଦୁଇଟି ଶବ୍ଦ ଲଗାଇ ସେ ଏ ଦିଗରେ ତାଙ୍କର ତ୍ରୁଟି ବିଚ୍ୟୁତିକୁ ହୁଏତ ଘୋଡ଼ାଇ ଦେବା ପାଇଁ ଚେଷ୍ଟା କରିଛନ୍ତି କିନ୍ତୁ ତାଙ୍କରି ଭାଷାରେ ଗୋଟିଏ "ଦୁଷ୍ପ୍ରାପ୍ୟ" ପୁସ୍ତକର ବିଭିନ୍ନ

ଅଂଶର ନକଲକୁ ନୂତନ ପୁସ୍ତକରେ ପ୍ରକାଶିତ କରିବାକୁ " ନାନା ଭବରେ ପ୍ରଚରିତ ଓ ଆଲୋଚିତ " ବୋଲି କହିବାଟା କଣ ଗ୍ରହଣୀୟ ?

ଏହା କଅଣ ସେକ୍ରେଟେରୀଙ୍କ ଭଷାରେ ବାବାଜୀ ପଦ୍ମଚରଣଙ୍କର " ପ୍ରତିଭ ପୂଜା ମାଧ୍ୟମରେ ଜାତୀୟ ଚେତନାର ଜାଗୃତି ? ? ?

## ଜୀବନ ଚରିତ — ପ୍ରଭୁ ଶ୍ୟାମାନନ୍ଦ
## ପ୍ରଭୁ ଶ୍ରୀରସିକାନନ୍ଦ ଦେବ

ବାବାଜୀ ପଦ୍ମଚରଣଙ୍କର ଅନ୍ୟ ଦଇଟି ସାଧୁଚରିତାତ୍ମକ ରଚନା ହେଉଛି – ପ୍ରଭୁ ଶ୍ୟାମାନନ୍ଦ ' ଓ ପ୍ରଭୁ ଶ୍ରୀରସିକାନନ୍ଦ ଦେବ ।

ପ୍ରଭୁ ଶ୍ୟାମାନନ୍ଦ ତତ୍କାଳୀନ ଉତ୍କଳ ଖଣ୍ଡ ଅନ୍ତର୍ଗତ ଦାଣ୍ଡେଶ୍ୱର ଗ୍ରାମରେ ୧୪୫୬ ଶକାବ୍ଦରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରେ ତାଙ୍କ ନାମ ଥିଲ ' ଦୁଃଖିଆ ' । ଦୀକ୍ଷା ଗ୍ରହଣ ପରେ ଗୁରୁ ତାଙ୍କର ନାମ ଦେଲେ ଦୁଃଖୀ କୃଷ୍ଣଦାସ ' । ସ୍ୱପ୍ନରେ ଶ୍ରୀମତୀ ଲଳିତା ତାଙ୍କର ନାମ ରଖିଲେ " ଶ୍ୟାମାନନ୍ଦ " ଏବଂ ସେହି ଦିନଠାରୁ ସେ ସର୍ବତ୍ର ଶ୍ୟାମାନନ୍ଦ ନାମରେ ପରିଚିତ । ସେ ବୃନ୍ଦାବନଧାମରେ ଥିବା ସମୟରେ ଉତ୍କଳକୁ ଯାଇ ରସିକ ମୁରାରି ନାମଧେୟ ଜନୈକ କୃଷ୍ଣଭକ୍ତକୁ କୃଷ୍ଣ-ମନ୍ତ୍ରରେ ଦୀକ୍ଷିତ କରିବା ନିମିତ୍ତ ଏବଂ ତାଙ୍କ ସହିତ ମିଳିତ ହୋଇ ଉତ୍କଳର ନରନାରୀଙ୍କୁ ଉଦ୍ଧାର କରିବା ଉଦ୍ଦେଶ୍ୟରେ ପ୍ରେମ ଭକ୍ତି ପ୍ରଚ୍ଚର କରିବା ନିମିତ୍ତ ଧ୍ୟାନାବସ୍ଥାରେ ଶ୍ରୀଶ୍ରୀମଦନଗୋପାଳଙ୍କ ଦ୍ୱାରା ଆଦିଷ୍ଟ ହେଲେ । ଶ୍ରୀଜୀବ ଗୋସ୍ୱାମୀ ମଧ୍ୟ ସ୍ୱପ୍ନରେ ଶ୍ରୀକୃଷ୍ଣଙ୍କଠାରୁ ଆଦେଶ ପାଇଲେ ଯେ ଶ୍ୟାମାନନ୍ଦଙ୍କୁ ଉତ୍କଳକୁ ଯିବାକୁ ହେବ ଏବଂ ସେଠାରେ ରସିକମୁରାରୀଙ୍କୁ ଦୀକ୍ଷିତ କରିବାକୁ ହେବ ।

ଏହି ରସିକମୁରାରୀ ୧୫୧୨ ଶକାବ୍ଦରେ ସୁବର୍ଣ୍ଣରେଖା ନଦୀର ତୀରବର୍ତ୍ତୀ ମଲ୍ଲଭୂମିର ଅନ୍ତର୍ଗତ ରୟଣୀ ନଗରର ଅଧିପତି ରାଜା ଶ୍ରୀଅଚ୍ୟୁତାନନ୍ଦ

ଦେବଙ୍କ ପୁତ୍ର ରୂପରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ମାତାଙ୍କ ନାମ ଶ୍ରୀମତୀ ଭବାନୀ ଠାକୁରାଣୀ । ରସିକ ଆବାଲ୍ୟରୁ କୃଷ୍ଣଗତ ପ୍ରାଣ । ଦିନେ କୃଷ୍ଣନାମ ଜପ କରୁଥିବା ସମୟରେ ସେ ଦିବ୍ୟଚକ୍ଷୁରେ ଦେଖି-ବାକୁ ପାଇଲେ ଯେ ଶ୍ୟାମସୁନ୍ଦର ତାଙ୍କୁ କହୁଛନ୍ତି– "ତୁମ୍ଭେ ଶ୍ୟାମାନନ୍ଦ-ଙ୍କଠାରୁ କୃଷ୍ଣମନ୍ତ୍ର ଗ୍ରହଣକର ।" ସେହିଦିନଠାରୁ ଶ୍ୟାମାନନ୍ଦଙ୍କୁ ଭେଟିବା ପାଇଁ ରସିକମୁରାରି ବ୍ୟାକୁଳ ହୋଇ ପଡ଼ିଲେ । ତେଣେ ଶ୍ୟାମାନନ୍ଦ ଆଦେଶ ପାଇବା ପରେ ଉତ୍କଳ ଅଭିମୁଖରେ ଯାତ୍ରା ଆରମ୍ଭ କରିଦେଲେ ଏବଂ ବାଟରେ ନାନାପ୍ରକାର ଅସୁବିଧା ଭୋଗିବା ପରେ ଶେଷରେ ଆସି ରୟନୀ ନଗରରେ ପହଞ୍ଚିଲେ ଏବଂ ରସିକମୁରାରିଙ୍କୁ କୃଷ୍ଣମନ୍ତ୍ରରେ ଦୀକ୍ଷିତ କରି ପ୍ରେମଭକ୍ତିର ନିଗୂଢ଼ ସାଧନପ୍ରଣାଳୀମାନ ଶିକ୍ଷା ଦେଲେ । ଶ୍ୟାମାନନ୍ଦଙ୍କଠାରୁ ରସିକମୁରାରିଙ୍କ ଧର୍ମପତ୍ନୀ ଶ୍ରୀମତୀ ଇଚ୍ଛାଦେବୀ ଏବଂ ତାଙ୍କର ବାଳିକା କନ୍ୟା ଦେବକୀ ମଧ୍ୟ ମନ୍ତ୍ର ଗ୍ରହଣ କଲେ । ଏହି ରସିକମୁରାରି ହେଉଛନ୍ତି ପ୍ରଭୁ ରସିକାନନ୍ଦ ଦେବ ।

ପ୍ରଭୁ ଶ୍ରୀଶ୍ୟାମାନନ୍ଦ ଓ ପ୍ରଭୁ ଶ୍ରୀରସିକାନନ୍ଦ ଦେବଙ୍କ ଦ୍ୱାରା ଉତ୍କଳ ପ୍ରେମବନ୍ୟାରେ ପ୍ଲାବିତ ହୋଇ ଉଠିଲା । ବିଶେଷତଃ ଶ୍ରୀଗୋପୀବଲ୍ଲଭପୁର ଓ ବାଲେଶ୍ୱର ଜିଲ୍ଲାର ଉତ୍ତର ଅଂଶ ଉକ୍ତ ପ୍ରେମ ପ୍ରସାରର କେନ୍ଦ୍ରଥିବାରୁ ବାଲେଶ୍ୱର, ମେଦିନୀପୁର, ମୟୂରଭଞ୍ଜ, ନୀଳଗିରି ଓ କେନ୍ଦୁଝର ପ୍ରଭୃତି ସ୍ଥାନମାନଙ୍କର ପ୍ରାୟ ସମସ୍ତ ଲୋକ ଶ୍ୟାମାନନ୍ଦୀ ପରିବାରଭୁକ୍ତ । ଏତଦ୍ ବ୍ୟତୀତ କଟକ, ପୁରୀ, ଗଞ୍ଜାମ ଓ ବଙ୍ଗ ଏବଂ ବ୍ରଜମଣ୍ଡଳରେ ମଧ୍ୟ ଅନେକ ଶ୍ୟାମାନନ୍ଦୀ ଭକ୍ତ ଅଛନ୍ତି । ବାବାଜୀ ପଦ୍ମଚରଣ ମଧ୍ୟ ଏହି ଶ୍ୟାମାନନ୍ଦୀ ପରିବାରଭୁକ୍ତ ବୈଷ୍ଣବ ସନ୍ନ୍ୟାସୀ ।

୧୫୫୨ ଶକାବ୍ଦ ଆଷାଢ଼ମାସ ଦେବସ୍ନାନ ପୂର୍ଣ୍ଣିମା ପରଦିନ ପ୍ରତିପଦ ତିଥିରେ ପ୍ରଭୁ ଶ୍ୟାମାନନ୍ଦ ପ୍ରଭୁ ରସିକାନନ୍ଦଦେବଙ୍କୁ ତାଙ୍କ ଗାଦୀର ଉତ୍ତରା-ଧିକାରୀ ଭାବରେ ବସାଇ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଶ୍ୟାମାନନ୍ଦଙ୍କ ପରେ ପ୍ରଭୁ ରସିକାନନ୍ଦ ଉତ୍କଳରେ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର କରିବାକୁ ଲାଗିଲେ । ଦୀର୍ଘ ୬୨ ବର୍ଷ କାଳ ଲୀଳା କରିବା ପରେ ଦିନେ

ଉତ୍ତର ବାଲେଶ୍ୱରର ଭେଗରାଇଠାରେ ଅବସ୍ଥାନ କରି ମୁଦ୍ରିତ ନୟନରେ କୌଣସି ଭକ୍ତି ପୁସ୍ତକ ବିଷୟ ଚିନ୍ତା କରୁଥିବା ବେଳେ ନବଘନ ଶ୍ୟାମସୁନ୍ଦର ସମ୍ମୁଖରେ ଉପସ୍ଥିତ ହୋଇ ତାଙ୍କର ଶେଷ ସମୟ ଆଗତ ପ୍ରାୟ ବୋଲି କହୁଥିବାର ଶୁଣିପାରିଲେ । ଏହି ବିଷୟ ସେ ତାଙ୍କର ଶିଷ୍ୟମାନଙ୍କୁ ଜଣାଇ ରେମୁଣା ଅଭିମୁଖରେ ଯାତ୍ରାକଲେ । ତାଙ୍କର ଦେହାବସାନ ପରେ ଏହି ରେମୁଣା କ୍ଷୀରଚୋରାଧାମରେ ତାଙ୍କୁ ସମାଧି ଦେବା ପାଇଁ ଶିଷ୍ୟମାନଙ୍କୁ ମଧ୍ୟ ଆଦେଶ ଦେଲେ ।

ରେମୁଣାରେ ପହଞ୍ଚି ପ୍ରଭୁ ଶ୍ରୀରସିକାନନ୍ଦ ଶ୍ରୀଗୋପୀନାଥଙ୍କ ମନ୍ଦିର ମଧ୍ୟରେ ପ୍ରବେଶ କଲେ ଏବଂ ସେହିଠାରେ ସ୍ୱଦେହରେ ଅପ୍ରକଟ ହେଲେ । ଅନୁଚରମାନେ ତାଙ୍କ ଅଦର୍ଶନରେ ଶୋକବିହ୍ୱଳ ହୋଇ ପଡ଼ିଲେ । ପରେ ତାଙ୍କର ପରିତ୍ୟକ୍ତ ବସ୍ତ୍ର, ଆଭରଣ ଓ ମାଳାଦି ନେଇ ଶ୍ରୀଗୋପାଳଙ୍କ ବେଢ଼ା ମଧ୍ୟରେ ଏକ ସ୍ଥାନରେ ତାଙ୍କର ସମାଧି ସ୍ଥାପନ କଲେ । ଅଦ୍ୟାପି ସେହି ସମାଧି ମନ୍ଦିରରେ ତାଙ୍କର ବସ୍ତ୍ର ଆଭରଣମାନ ପୂଜିତ ହେଉଛନ୍ତି ।

ବାବାଜୀ ପଦ୍ମଚରଣ ଉପରୋକ୍ତ ପୁସ୍ତକ ଦୁଇଖଣ୍ଡରେ ଏହି ମହାମାନବ ଦୁଇଜଣଙ୍କର ଅଲୌକିକ ଲୀଳା, ଐଶ୍ୱର୍ଯ୍ୟ ଏବଂ ବିଭୂତି ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଛନ୍ତି । ଏହି ଦୁଇଖଣ୍ଡ ପୁସ୍ତକ ଉତ୍କଳରେ ଶ୍ରୀଚୈତନ୍ୟଙ୍କ ପରବର୍ତ୍ତୀ ସମୟରେ ବୈଷ୍ଣବୀୟ ଭାବଧାରା ପ୍ରଚାର ଓ ପ୍ରସାରର ଜ୍ୱଳନ୍ତ ଇତିହାସ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ପ୍ରବନ୍ଧ ସମାବେଶ — "ଭକ୍ତକଥା"

ବାବାଜୀ ପଦ୍ମଚରଣ ଢେଙ୍କାନାଳରେ ରାଜକାର୍ଯ୍ୟ କରୁଥିବା ସମୟରେ ରାଜ ପ୍ରାସାଦରେ ପ୍ରତି ରବିବାର ଦିନ ଏକ ଧର୍ମସଭାର ବ୍ୟବସ୍ଥା କରିଥିଲେ । ଉକ୍ତ ହରିସଭାରେ ଢେଙ୍କାନାଳର ଧର୍ମପ୍ରାଣ ରାଜା ସୁରପ୍ରତାପ ମହେନ୍ଦ୍ର ବାହାଦୂର ଅଧିକାଂଶ ସମୟରେ ଉପସ୍ଥିତ ରହୁଥିଲେ । ସେ ଗୌଡ଼ୀୟ

ସମ୍ପ୍ରଦାୟଭୁକ୍ତ ଥିବାରୁ ଗୌଡ଼ୀୟ ବୈଷ୍ଣବ ଧର୍ମର ସାର ସିଦ୍ଧାନ୍ତମାନ ଉକ୍ତ ହରିସଭାର ମୁଖ୍ୟ ଆଲୋଚ୍ୟ ବିଷୟ ଥିଲା ।

ଶ୍ରୀମନ୍ ଗୟ ଗମାନନ୍ଦ, ଶ୍ରୀମନ୍ ବାସୁଦେବ ସାର୍ବଭୌମ ଭଟ୍ଟାଚାର୍ଯ୍ୟ, ଶ୍ରୀମନ୍ ପ୍ରକାଶାନନ୍ଦ ସରସ୍ୱତୀ, ଶ୍ରୀମନ୍ ସନାତନ ଗୋସ୍ୱାମୀ, ଶ୍ରୀମନ୍ ରୂପ ଗୋସ୍ୱାମୀ, ଶ୍ରୀମନ୍ ଜୀବ ଗୋସ୍ୱାମୀ, ଶ୍ରୀମନ୍ ଗୋପାଳ ଭଟ୍ଟ ଗୋସ୍ୱାମୀ, ଶ୍ରୀମନ୍ ରଘୁନାଥ ଗୋସ୍ୱାମୀ, ଶ୍ରୀମନ୍ ରଘୁନାଥ ଭଟ୍ଟ ଗୋସ୍ୱାମୀ, ଶ୍ରୀମନ୍ କବି କର୍ଣ୍ଣପୁର ପ୍ରଭୃତି ଶ୍ରୀମନ୍ ମହାପ୍ରଭୁ ଶ୍ରୀଚୈତନ୍ୟଦେବଙ୍କର ପାର୍ଶଦ-ମାନେ ଭକ୍ତି ସମ୍ବନ୍ଧରେ ଯେଉଁ ସବୁ ଗ୍ରନ୍ଥ ରଚନା କରିଥିଲେ ସେ ସମସ୍ତ ସଂସ୍କୃତରେ ଲେଖା ଯାଇଥିବାରୁ ଜନସାଧାରଣଙ୍କର ବୋଧଗମ୍ୟ ନ ଥିଲା । ଠାକୁର ଶ୍ରୀ ଲୋଚନ ଦାସ, ଠାକୁର ଶ୍ରୀ ବୃନ୍ଦାବନ ଦାସ ଓ ଶ୍ରୀଳ କୃଷ୍ଣଦାସ କବିରାଜଙ୍କ ରଚିତ ଶ୍ରୀଚୈତନ୍ୟମଙ୍ଗଳ, ଶ୍ରୀଚୈତନ୍ୟ ଭାଗବତ ଓ ଶ୍ରୀଚୈତନ୍ୟ ଚରିତାମୃତରେ ବଙ୍ଗ ଭାଷାରେ ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ଲୀଳା ବର୍ଣ୍ଣନା କରଯାଇଥିଲେହେଁ ସେ ସମସ୍ତ ଗ୍ରନ୍ଥରେ ଗୌଡ଼ୀୟ ବୈଷ୍ଣବ ଧର୍ମର ସାର-ସିଦ୍ଧାନ୍ତମାନ ମଧ୍ୟ ସନ୍ନିବେଶିତ ହୋଇଛି । ତେଣୁ ବାବାଜୀ ପଦ୍ମଚରଣ ଏହି ତିନିଖଣ୍ଡ ବଙ୍ଗଳା ଗ୍ରନ୍ଥରୁ ବିଷୟବସ୍ତୁ ସଂଗ୍ରହ ପୂର୍ବକ ପ୍ରବନ୍ଧମାନ ରଚନା କରି ଉକ୍ତ ହରିସଭାରେ ପାଠ କରୁଥାନ୍ତି । ସେହି ସମସ୍ତ ପ୍ରବନ୍ଧକୁ ପରବର୍ତ୍ତୀ କାଳରେ ପୁସ୍ତକାକାରରେ ସନ୍ନିବେଶିତ କରି ବାବାଜୀ ଏହି "ଭକ୍ତିକଥା" ନାମକ ଗ୍ରନ୍ଥ ପ୍ରକାଶ କଲେ ୧୯୨୨ ମସିହାରେ ।

ଏହି "ଭକ୍ତିକଥା" ପୁସ୍ତକରେ ଭକ୍ତିର ଶ୍ରେଷ୍ଠତ୍ୱ, ଭକ୍ତର ଲକ୍ଷଣ, ଭକ୍ତର କର୍ତ୍ତବ୍ୟ, ଭକ୍ତ ଶ୍ରୀଭଗବାନଙ୍କର ଅତି ପ୍ରିୟ, ଭକ୍ତମାହାତ୍ମ୍ୟ, ଭକ୍ତର ଦୃଢ଼ତା, ସାଧନ ଭକ୍ତି, ରସତତ୍ତ୍ୱ, ବୈଷ୍ଣବଙ୍କର ଶ୍ରେଣୀବିଭାଗ, ସାଧୁସଙ୍ଗମ, ଶ୍ରୀଗୁରୁତତ୍ତ୍ୱ, ଶ୍ରୀହରିନାମ ମହାତ୍ମ୍ୟ, ହରିନାମ ଗ୍ରହଣର ଫଳ, ବିଗ୍ରହ ତତ୍ତ୍ୱ, ଶ୍ରୀକୃଷ୍ଣ ତତ୍ତ୍ୱ, ଶ୍ରୀକୃଷ୍ଣଙ୍କର କୃପା, କୃଷ୍ଣପ୍ରେମ ଶ୍ରୀରାଧା ତତ୍ତ୍ୱ ଓ ଗୋପୀପ୍ରେମ, କାମ ଓ ପ୍ରେମର ବିଚାର, ଜୀବତତ୍ତ୍ୱ, ଶ୍ରୀବୃନ୍ଦାବନ ତତ୍ତ୍ୱ, ବୈଷ୍ଣବାପରାଧ, ଶ୍ରୀମଦ୍‌ଭାଗବତ, ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁଙ୍କ ତତ୍ତ୍ୱ ମହାପ୍ରଭୁଙ୍କ ଗୁଣ, ମହାପ୍ରଭୁଙ୍କ ସ୍ନେହ, ମହାପ୍ରଭୁଙ୍କ ବଦାନ୍ୟତା, ମହାପ୍ରଭୁଙ୍କ କୃପା ଏବଂ

ମହାପ୍ରଭୁଙ୍କର ଅଚିନ୍ତ୍ୟ ଶକ୍ତିର କାର୍ଯ୍ୟ ଶିରୋନାମାରେ ପ୍ରବନ୍ଧମାନ ସନ୍ନିବେଶିତ କରଯାଇଛି । ଉପରୋକ୍ତ ତିନି ଗୋଟି ଗୌଡ଼ୀୟ ବୈଷ୍ଣବଧର୍ମ-ଗ୍ରନ୍ଥର ବିଭିନ୍ନ ସ୍ଥାନରେ ବର୍ଣ୍ଣନା କରଯାଇଥିବା ଏକ ଏକ ପ୍ରକାରର ବିଷୟ-ବସ୍ତୁକୁ ଅବଲମ୍ବନ କରି ତତ୍ ତତ୍ ସମ୍ବନ୍ଧିତ ସ୍ୱତନ୍ତ୍ର ପ୍ରବନ୍ଧମାନ ରଚନା କରିବା ଦ୍ୱାର ବାବାଜୀ ପଦ୍ମଚରଣ ଭକ୍ତିମାର୍ଗର ବିଶେଷକରି ଗୌଡ଼ୀୟ ବୈଷ୍ଣବ ସାଧକ ମାନଙ୍କ ପାଇଁ ଏକ ଅମୂଲ୍ୟ ଗ୍ରନ୍ଥ ରଖିଯାଇଛନ୍ତି । ଏହି ପୁସ୍ତକ ସମ୍ବନ୍ଧରେ ବଙ୍ଗର ସୁବିଖ୍ୟାତ ବୈଷ୍ଣବାଗ୍ରଯ୍ୟ ଶ୍ରୀରସିକମୋହନ ବିଦ୍ୟାଭୂଷଣଙ୍କର ନିମ୍ନ ମତ ପୁସ୍ତକଟିର ଉପାଦେୟତା ପ୍ରତିପନ୍ନକରୁଛି ।

× × × I have no doubt that the Readers of this work will be highly benefitted in their way to spiritual advancement The author & this work is Baishnab ascetic of high culture. He is a graduate of the Calcutta University. Renouncing all secular relation, he has now turned true devotee of loving God and the essays that this work consists of are direct product of his deep ' meditations ".

ବାବାଜୀ ପଦ୍ମଚରଣଙ୍କର ଏହି "ଭକ୍ତିକଥା" ଏତେ ଉପାଦେୟ ଏବଂ ସାରଗର୍ଭକ ଯେ ବଙ୍ଗଭାଷାରେ ଅସଂଖ୍ୟ ବୈଷ୍ଣବ ଧର୍ମଗ୍ରନ୍ଥ ଥିବା ସତ୍ତ୍ୱେ ଏହି ପୁସ୍ତକ ତାଙ୍କ ଜୀବଦ୍ଦଶାରେ ବଙ୍ଗଳାରେ ଅନୁବାଦିତ ହୋଇ ପ୍ରକାଶିତ ହୋଇଥିଲା । ଯେତେଦୂର ମନେ ହୁଏ ଏହା ପୂର୍ବରୁ କୌଣସି ଓଡ଼ିଆ ସାହିତ୍ୟ ବଙ୍ଗଳା ଭାଷାରେ ଅନୁବାଦିତ ହୋଇ ପ୍ରକାଶ ପାଇ ନ ଥିଲା ।

ବାବାଜୀ ପଦ୍ମଚରଣଙ୍କର ରଚିତ ଏହି "ଭକ୍ତିକଥା" ପୁସ୍ତକ ଆଜି ଦୁଷ୍ପ୍ରାପ୍ୟ—ଏହାଠାରୁ ବଳି ଲଜ୍ଜା ଓ ପରିତାପର ବିଷୟ ଓଡ଼ିଆ ଜାତି ପକ୍ଷରେ ଆଉ କଅଣ ହୋଇପାରେ ?

# ଉପସଂହାର

ବାବାଜୀ ପଦ୍ମଚରଣଙ୍କ କବି ପ୍ରତିଭା ସମ୍ବନ୍ଧରେ ଏଥି ପୂର୍ବରୁ କିଞ୍ଚିତ୍ ଆଲୋକପାତ କରାଯାଇଛି । ତାଙ୍କ ରଚିତ ଗ୍ରନ୍ଥମାନଙ୍କର ପୁନଃ ପ୍ରକାଶନ ଅଭାବରୁ ସେ ସମସ୍ତ ଅତି ଉପାଦେୟ ହୋଇଥିଲେ ମଧ୍ୟ ଉତ୍କଳୀୟ ସାହିତ୍ୟ ତଥା ଆଧ୍ୟାତ୍ମ୍ୟ ପିପାସୁ ମାନେ ସେ ସମସ୍ତ ପାଠକରିବାରୁ ବଞ୍ଚିତ ହେଉଛନ୍ତି । ଅତିଶୟ ଦୁର୍ଭାଗ୍ୟର ବିଷୟ, ବାବାଜୀ ପଦ୍ମଚରଣ ଯେ ଜଣେ ଉଚ୍ଚକୋଟୀର କବି ଓ ସାହିତ୍ୟିକ ଏବଂ ତାଙ୍କର ଏ ଦିଗରେ ଅବଦାନ ବହୁ ଦିଗରୁ ଉତ୍କଳରେ ପ୍ରଥମ—ଏ କଥା ଆଜି କହିଲେ ସମସ୍ତଙ୍କୁ ହୁଏତ ନୂତନ କିମ୍ବା ମନଗଢା କଥା ବୋଲି ମନେ ହେବ । ଆନନ୍ଦ ଓ ସୌଭାଗ୍ୟର କଥା ଯେ କଟକ ଓଡ଼ିଆ ଶ୍ରୀହରିସଙ୍କୀର୍ତ୍ତନ ପ୍ରକାଶନୀ ବାବାଜୀ ପଦ୍ମଚରଣଙ୍କ ପଦ୍ୟାନୁବାଦ ଶ୍ରୀଚୈତନ୍ୟ-ଚନ୍ଦ୍ରାମୃତଂ ପୁସ୍ତକ ପୁନଃ ମୁଦ୍ରଣ କରାଇଛନ୍ତି । ଏହି ପୁସ୍ତକର ଭୂମିକାରୁ ଜଣା-ଯାଏ ଯେ ବାବାଜୀ ପଦ୍ମଚରଣ ଶ୍ରୀଳ ଜୀବଗୋସ୍ୱାମୀଙ୍କ "ଗୋପାଳ ଚମ୍ପୂର ମଧ୍ୟ ଗଦ୍ୟାନୁବାଦ କରି ପ୍ରକାଶ କରିଥିଲେ । ଏହି ପୁସ୍ତକଟି ଦୁଷ୍ପ୍ରାପ୍ୟ ହେବାରୁ ସେ ସମ୍ବନ୍ଧରେ କୌଣସି ଆଲୋକପାତ ଉପରୋକ୍ତ ପ୍ରବନ୍ଧମାନଙ୍କରେ କରାଯାଇ ପାରିନାହିଁ । ଏହିପରି ହୁଏତ ତାଙ୍କର କବି ପ୍ରତିଭା ଆଉ କେଉଁଠି ଲୁଚି ରହିଥିବ, କିଏ କହି ପାରିବ ।

ବାବାଜୀ ପଦ୍ମଚରଣଙ୍କର ସାହିତ୍ୟ କୃତି ଅନୁଧ୍ୟାନ କଲେ ଜଣାଯାଏ ଯେ ତାଙ୍କର ସାହିତ୍ୟ-ସୃଷ୍ଟି ବହୁ ଦିଗରୁ ଉତ୍କଳରେ ସର୍ବପ୍ରଥମ ଓ କେତେକ ସ୍ଥଳରେ ଏକମାତ୍ର ମଧ୍ୟ । ଶ୍ରୀଚୈତନ୍ୟଚରିତାମୃତ ଭଳି ଏକ ମହାନ ଗ୍ରନ୍ଥକୁ ଓଡ଼ିଆରେ ଅନୁବାଦ କରି ନିଜସ୍ୱ ଟୀକା ସହ ପ୍ରକାଶ କରିବାରେ ବାବାଜୀ ପଦ୍ମଚରଣ ହେଉଛନ୍ତି ସର୍ବ ପ୍ରଥମ । ଶ୍ରୀଳ ସନାତନ ଗୋସ୍ୱାମୀଙ୍କ ବିରଚିତ ଶ୍ରୀବୃହଦ୍ ଭଗବତାମୃତ ଗ୍ରନ୍ଥକୁ ଓଡ଼ିଆରେ ଅନୁବାଦ କରି ପ୍ରକାଶ କରିଛନ୍ତି ଏକ ମାତ୍ର ବାବାଜୀ ପଦ୍ମଚରଣ ।

ତାଙ୍କ ପୂର୍ବରୁ ଅନ୍ୟ କେହି ଓଡିଆରେ ଗୌଡୀୟ କୀର୍ତ୍ତନ ଲେଖି ପ୍ରକାଶ କରି ନାହାନ୍ତି । ଓଡିଶୀ ରାଗରାଗିଣୀ ଓ ଛନ୍ଦରେ ବିଭିନ୍ନ ଯାନିଯାତ୍ରା ଉପଯୋଗୀ ସଂଗୀତ ବାବାଜୀ ପଦ୍ମଚରଣ ସର୍ବପ୍ରଥମେ ରଚନାକରି ପ୍ରକାଶ କରିଥିଲେ । ଛୋଟ ଛୋଟ ବାଳକ ବାଳିକା ମାନଙ୍କ ପାଇଁ ତାଙ୍କ ରଚିତ ଶ୍ରୀକୃଷ୍ଣ ଓ ଶ୍ରୀଗୌରାଙ୍ଗ ଅନନ୍ୟ । ଉତ୍କଳର ତିନି ଜଣ କୃତି ସନ୍ତାନ—ଶ୍ରୀରାୟ ରାମାନନ୍ଦ, ପ୍ରଭୁ ଶ୍ୟାମାନନ୍ଦ ଓ ପ୍ରଭୁ ରସିକାନନ୍ଦ ଦେବଙ୍କ ଜୀବନଚରିତ ବାବାଜୀ ପଦ୍ମଚରଣଙ୍କ ପୂର୍ବରୁ ଅନ୍ୟ କେହି ଓଡିଆ-ଭାଷାରେ ପ୍ରକାଶ କରି ନାହାନ୍ତି । ଅନ୍ୟ ଭାଷାରେ ଅନୂଦିତ ହୋଇନଥିବା ଓଡିଆ ଭାଷାର ପ୍ରଥମ ଗ୍ରନ୍ଥ ବାବାଜୀ ପଦ୍ମଚରଣଙ୍କ କୃତ "ଭକ୍ତି କଥା" ବୋଲି ଅନୁମିତ ହୁଏ । ଉପଯୁକ୍ତ ଭାବରେ ତାଙ୍କର ସାହିତ୍ୟ ରଚନାକୁ ଗବେଷଣା କଲେ ସେଥିରୁ ଯେ ଆହୁରି କେତେ ନୂଆ ନୂଆ ବିଷୟ ଜଣା ପଡିବ, ଏଥିରେ ସନ୍ଦେହ କରିବାର କିଛିନାହିଁ ।

ତାଙ୍କ କବି ପ୍ରତିଭାର ଏକ ବୈଶିଷ୍ଟ୍ୟ ହେଉଛି ଯେ ସେ ଏକାଧାରରେ ଜଣେ ପ୍ରକାଶକ, ଅନୁବାଦକ, ଟୀକାକାର, ସଂଗୀତ ରଚୟିତା, ନାଟ୍ୟ-କାର, ଅମିତ୍ରାକ୍ଷରଛନ୍ଦ ରଚୟିତା, ପ୍ରାବନ୍ଧିକ ଓ ଜୀବନଚରିତାକାର । ସମସ୍ତ ପ୍ରକାର ସାହିତ୍ୟ-ସୃଷ୍ଟି-କ୍ଷମତା-ସମ୍ପନ୍ନ ବ୍ୟକ୍ତି ତାଙ୍କ ଭଳି କ୍ୱଚିତ୍ ଦେଖାଯାନ୍ତି ।

ଆଜି ତାଙ୍କ ସାହିତ୍ୟ ଅବହେଳିତ, ଲୁପ୍ତପ୍ରାୟ । ସେ ସମସ୍ତଙ୍କୁ ପୁନଃ ପ୍ରକାଶିତ କରି ଲୋକଲୋଚନକୁ ଆଣିବ କିଏ ? ସେ ଦାୟିତ୍ୱ ଓ କର୍ତ୍ତବ୍ୟ କାହାର ? ତାଙ୍କର ରଚନାବଳୀର ମୁଦ୍ରଣ ବ୍ୟୟ ସେ ତତ୍କାଳୀନ ରାଜା, ଜମିଦାରଙ୍କଠାରୁ ପ୍ରାପ୍ତ ହୋଇଥିଲେ ବୋଲି ତାଙ୍କ ପୁସ୍ତକର "ଭୂମିକା" ଗୁଡିକରୁ ଜଣାଯାଏ । ସେତେବେଳେ ଏମାନେ ଦେଶରେ ସାହିତ୍ୟ, କଳାର ପୃଷ୍ଠପୋଷକ ଥିଲେ । ଦେଶ ସ୍ୱାଧୀନ ହେବା ପରେ ରାଜନ୍ତି ଓ ଜମିଦାରୀ ଉଚ୍ଛେଦ ହେଲା । ଆମ ଜାତୀୟ ସରକାର କଳା ଦିଗରେ ନୃତ୍ୟ ସଂଗୀତ ଏକାଡେମୀ ଓ ସାହିତ୍ୟ ଦିଗରେ ସାହିତ୍ୟ ଏକାଡେମୀ ସଂସ୍ଥାମାନ ଗଠନ ପୂର୍ବକ ବିକଳ୍ପ ବ୍ୟବସ୍ଥା କଲେ । ଏକମାତ୍ର ସେହି

ସାହିତ୍ୟ ଏକାଡ଼େମୀ ଏ ଦିଗରେ ପଦକ୍ଷେପ ନେଲେ ବାବାଜୀ ପଦ୍ମଚରଣଙ୍କ ସାହିତ୍ୟ ବଞ୍ଚି ରହିବ, ଲୋକଲୋଚନକୁ ଆସି ପାରିବ ଏବଂ ଏହା ଦ୍ୱାରା ପ୍ରକୃତ ପ୍ରତିଭା ପୂଜା ହେବ ନଚେତ୍ ବାବାଜୀ ପଦ୍ମଚରଣଙ୍କ ମରଦେହ ଯେପରି ମାଟିତଳେ ପୋତି ହୋଇ ନିଶ୍ଚିହ୍ନ ହୋଇ ଯାଇଛି, ତାଙ୍କ ରଚିତ ସାହିତ୍ୟ କୃତି ସେହିପରି ଅଳ୍ପଦିନ ମଧ୍ୟରେ ଧରାପୃଷ୍ଠରୁ ନିଶ୍ଚିହ୍ନ ହୋଇଯିବ ।

